# ଆମ ଦେଶର ନାରୀ







ଶ୍ରୀଦବର

କଟକ ଟ୍ରେଡ଼ିଂ କମ୍ପାନୀ
ବାଲୁବଜାର, କଟକ-୨

# ଆମ ଦେଶର ନାରୀ

ଲେଖକ—


୰ ଶିବପ୍ରସାଦ ଦାଶ, ଏମ୍. ଏଉ୍.



ନୂତନ ସଂସ୍କରଣ

୧୯୮୯

ପ୍ରକାଶକ—

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ-୨

ମୂଲ୍ୟ—୯ଟଙ୍କା

# ସୂଚୀପତ୍ର





( ୧ )

# ଉଭୟ ଭାରତୀ

ପୂର୍ବକାଳରେ ନର୍ମଦା କୂଳରେ ଚେଦି ରାଜ୍ୟର ରାଜଧାନୀ ମାହିଷ୍ମତୀ ଏକ ବିଖ୍ୟାତ ନଗରୀ ଥିଲା । ସେଠାରେ ମଣ୍ଡନ ମିଶ୍ର ନାମରେ ଜଣେ ଅତି ବଡ ପଣ୍ଡିତ ଥିଲେ ।

ସେତେବେଳେ ଭାରତର ଲୋକମାନେ ଅଧିକ ସଂଖ୍ୟାରେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ବୌଦ୍ଧଧର୍ମ ହିନ୍ଦୁଧର୍ମର ଏକ ଶାଖା ବା ସଂସ୍କାର । କିନ୍ତୁ ବୌଦ୍ଧମାନେ ବେଦ ମାନନ୍ତି ନାହିଁ, କିମ୍ବା ସମାଜରେ ବ୍ରାହ୍ମଣ ଶ୍ରେଷ୍ଠ ବୋଲି କହନ୍ତି ନାହିଁ । ବୌଦ୍ଧଧର୍ମ ବୁଦ୍ଧଦେବ ପ୍ରଚାର କରିଥିଲେ । ସେ ଈଶ୍ୱରଙ୍କ କଥା କିଛି ନ କହି ନୀରବ ରହୁଥିଲେ । ଥରେ ତାଙ୍କର ଜଣେ ଶିଷ୍ୟ ତାଙ୍କୁ ଈଶ୍ୱରଙ୍କ ସମ୍ବନ୍ଧରେ ପଚାରିଥିଲା । ବୁଦ୍ଧଦେବ ଈଶ୍ୱରଙ୍କ ଥିବା ନ ଥିବା ସମ୍ବନ୍ଧରେ ତାଙ୍କୁ କୌଣସି ଉତ୍ତର ଦେଇ ନ ଥିଲେ । ମୋଟ କଥାରେ, ବୌଦ୍ଧଧର୍ମ ଶୂନ୍ୟବାଦ ପ୍ରଚାର କରେ ଏବଂ କହେ ସେ ପବିତ୍ର ଜୀବନଯାପନ କଲେ, ମନୁଷ୍ୟ ମୁକ୍ତି ପାଏ । ମୁକ୍ତି ପାଇଁ ଈଶ୍ୱର ପୂଜା ବା ଈଶ୍ୱରଙ୍କ ସମ୍ବନ୍ଧରେ ଜ୍ଞାନ ଆବଶ୍ୟକ ନୁହେଁ ।

ବୌଦ୍ଧଧର୍ମ ଛଡ଼ା ସେତେବେଳେ ଶୈବ, ଶାକ୍ତ, ତାନ୍ତ୍ରିକ, ଗାଣପତ୍ୟ ପ୍ରଭୃତି ଅନେକ ଉପଧର୍ମ ପ୍ରବଳ ହୋଇଥିଲା । ଏହି ଧର୍ମମାନ ମାନୁଥିବା ଲୋକେ ଆପଣା ଆପଣା ଭିତରେ କଳି କରୁଥିଲେ ।

ମହାତ୍ମା ଶଙ୍କରାଚାର୍ଯ୍ୟ ଦାକ୍ଷିଣାତ୍ୟର କେରଳ ଦେଶରେ ଜନ୍ମ ହୋଇଥିଲେ । ସେ ବେଦ, ବେଦାଙ୍ଗ, ଦର୍ଶନ ଉପନିଷଦରେ ଜଣେ ଶ୍ରେଷ୍ଠ ପଣ୍ଡିତ ଥିଲେ ।

ଶଙ୍କର କହୁଥିଲେ, ଜଗତରେ ଏକ ଈଶ୍ୱର ବା ବ୍ରହ୍ମ ପୂର୍ଣ୍ଣ ରହିଛନ୍ତି । ଜୀବ ମାନେ ସେହି ବ୍ରହ୍ମର ଏକ ଅଂଶ, ଜଗତ ମଧ୍ୟ ତାହାଙ୍କର ଅଂଶ, ଜୀବ ବ୍ରହ୍ମରୁ ଆସେ, ବ୍ରହ୍ମରେ ଲୀନ ହୁଏ । ଏ ଜ୍ଞାନ ଉଦୟ ହେଲେ, ଜୀବର ମୁକ୍ତି ହୁଏ । ଅର୍ଥାତ୍ ଜୀବର ପୁନର୍ଜନ୍ମ ହୁଏ ନାହିଁ । ଏହି ମତକୁ ଅଦ୍ୱୈତବାଦ କହନ୍ତି ।

ଶଙ୍କର, ବୌଦ୍ଧ, ଶୈବ ପ୍ରଭୃତି ସବୁ ମତ ଖଣ୍ଡନ କରି, ଭାରତରେ ଅଦ୍ୱୈତବାଦ ପ୍ରତିଷ୍ଠା କରିବା ପାଇଁ ପ୍ରଚାର କରିଥିଲେ । ତାଙ୍କ ପ୍ରଭାବରେ ବୌଦ୍ଧଧର୍ମ ଭାରତରୁ ଲୋପ ପାଇଥିଲା । ବୌଦ୍ଧ ପଣ୍ଡିତମାନେ ତାଙ୍କୁ ଯୁକ୍ତିରେ ନ ପାରି ଆତ୍ମହତ୍ୟା କରିଥିଲେ ।

ଶଙ୍କର ମାହିଷ୍ମତୀର ବିଖ୍ୟାତ ପଣ୍ଡିତ ମଣ୍ଡନ ମିଶ୍ରଙ୍କୁ ଯୁକ୍ତିରେ ହରାଇବେ ବୋଲି ସେଠାକୁ ଗଲେ । ବାଟରେ ନର୍ମଦାରେ ଗାଧୋଇଲେ । ମଣ୍ଡନ ମିଶ୍ରଙ୍କ ଦାସୀ ନର୍ମଦାକୁ ଜଳ ପାଇଁ ଆସିଥିଲା । ତାକୁ ଶଙ୍କର ମଣ୍ଡନ ମିଶ୍ରଙ୍କ ଘର କେଉଁଠି ବୋଲି ପଚାରିଲେ ।

ଦାସୀ ଉତ୍ତର କଲା, "ଗୋସାଇଁ, ତାଙ୍କ ଘର ଠଉରାଇବା ବଡ଼ କଥା ନୁହେଁ । ତାଙ୍କ ଘରେ ବିଦ୍ୟାର ଏତେ ଚର୍ଚ୍ଚା ହୁଏ ଯେ, ତାଙ୍କ ଘରର ଶୁଆ ମଧ୍ୟ ବେଦ ଆବୃତ୍ତି କରୁଥାଏ, ମିଶ୍ରଙ୍କୁ ଅନେକ ଶିଷ୍ୟ ବେଢ଼ି ବସିଥାନ୍ତି । ଯେଉଁଠି ଆପଣ ଶୁଆର ଦେବଭାଷାରେ ସବୁ କଥା କହୁ ଥିବାର ଶୁଣିବେ, ତାକୁଇ ମଣ୍ଡନ ମିଶ୍ରଙ୍କ ଘର ବୋଲି ଜାଣିବେ ।"

ମଣ୍ଡନ ମିଶ୍ର ଶଙ୍କରଙ୍କ ସଙ୍ଗେ ଯୁକ୍ତିତର୍କ କରିବେ ବୋଲି ରାଜି ହେଲେ । ଅନେକ ବଡ଼ ବଡ଼ ପଣ୍ଡିତ ଯୁକ୍ତି ଶୁଣିବେ ବୋଲି ସେଦିନ ରୁଣ୍ଡ ହୋଇଗଲେ । ତେବେ ଜୟ ପରାଜୟ ବାଛୁବ କିଏ ? ଭାବ ଭାବ ଦୁହେଁ ବ୍ୟସ୍ତ ହେଲେ । ଏତେ ବଡ଼ ଦୁଇ ପଣ୍ଡିତ, ତାଙ୍କଠୁ ଯେ ବେଶୀ ଜାଣେ, ସେ ସିନା ବିଚାରପତି ହେବ । ଭାବ ଭାବ ଶେଷରେ ଦୁହେଁ ସ୍ଥିର କଲେ, ମଣ୍ଡନ ମିଶ୍ରଙ୍କ ଭାର୍ଯ୍ୟା ଉଭୟ ଭାରତୀଙ୍କ ଛଡ଼ା ଅନ୍ୟ କେହି ସେଥିପାଇଁ ଯୋଗ୍ୟ ନୁହେଁ ।

ବେଦ, ବେଦାନ୍ତ, ଦର୍ଶନ, ଉପନିଷଦର ବହୁତ କଥା ଯୁକ୍ତି ହେଲା । ସତର ଦିନ ପର୍ଯ୍ୟନ୍ତ ଯୁକ୍ତିତର୍କ ହେବା ପରେ ଉଭୟ ଭାରତୀ ଶଙ୍କର ଜିତିଲେ ବୋଲି ଘୋଷଣା କଲେ ।

ଶଙ୍କରଙ୍କ ପରି ଜ୍ଞାନୀ ବିଦ୍ୱାନ ଭାରତରେ ନ ଥିଲେ । ଭାରତର କେହି ଜଣେ ସୁଦ୍ଧା ତାଙ୍କୁ ଜ୍ଞାନରେ ହରାଇ ପାରି ନ ଥିଲେ । ସେ ଏକଥା ଦେଖିଲେ, ଯେଉଁ ମଣ୍ଡନ ମିଶ୍ର ତାଙ୍କ ସଙ୍ଗେ ସତର ଦିନକାଳ ବିଦ୍ୟାରେ ଲଢ଼ିଲେ, ତାଙ୍କ ଅପେକ୍ଷା ତାଙ୍କ ଭାର୍ଯ୍ୟା ଉଭୟ ଭାରତୀ ବିଦ୍ୟା ଜ୍ଞାନରେ ବଡ଼ । ତାଙ୍କୁ ଯଦି ସେ ବିଦ୍ୟାରେ ନ ହରାଇବେ, ତେବେ ତାଙ୍କର ଆଉ ମହତ୍ତ୍ୱ ବଢ଼ିବ କ'ଣ ?

ଉଭୟ ଭାରତୀ ମନେକଲେ, ମୋ ପତିଙ୍କୁ ଯୁକ୍ତିରେ ହରାଇ ଶଙ୍କର ଏଠାରୁ ଯିବେ କପରି ? ସେ ମୋତେ ହରାନ୍ତୁ ।”

ପୁଣି ସତର ଦିନ ବିବାଦ ଚାଲିଲା । ସଭାର ପଣ୍ଡିତମାନେ ଆଶ୍ଚର୍ଯ୍ୟ ହେଲେ । କେହି କାହାରିକୁ ହରାଇ ପାରିଲେ ନାହିଁ । ଦୁହେଁ ସମାନ ହେଲେ । ଉଭୟ ଭାରତୀ ଟିକିଏ ବୁଝିଲେ, ଶଙ୍କର ଶାସ୍ତ୍ରରେ ଭାରି ପଣ୍ଡିତ, ସବୁ ଜାଣନ୍ତି । ତାଙ୍କୁ ଶାସ୍ତ୍ରରେ ପାରିବେ ନାହିଁ । ତେଣୁ ଭାବି ଭାବି ଠିକ୍ କଲେ, ତାଙ୍କୁ କାମଶାସ୍ତ୍ର କଥା ପଚାରିବେ । ସେହି ପ୍ରଶ୍ନର ଉତ୍ତର ଶଙ୍କର ଦେଇ ପାରିଲେ ନାହିଁ । ସେ ତ ଆଜନ୍ମ ବ୍ରହ୍ମଚାରୀ, କାମଶାସ୍ତ୍ର ଦେଖି ନ ଥିଲେ ।

ଶଙ୍କର କାମଶାସ୍ତ୍ର ବିବାଦ ନିମନ୍ତେ ମାସେ ସମୟ ମାଗିଲେ । ତା' ପରେ ଯୋଗବଳରେ ନିଜେ ଶରୀର ଛାଡ଼ି, ଜଣେ ରାଜାଙ୍କ ମୃତ ଶରୀରରେ ପ୍ରବେଶ କଲେ । ମଲା ରାଜାଙ୍କ ଶବ ଜୀଇଁ ଉଠିଲା । ରାଜା ପୁଣି ପୂର୍ବପରି ରାଜ୍ୟ ଚଳାଇଲେ । ସେହି ରାଜାଙ୍କ ଶରୀରରେ କିଛିଦିନ ରହି କାମଶାସ୍ତ୍ର କଥା ଆଲୋଚନା କରି ଶଙ୍କର ପୁଣି ନିଜ ଶରୀରକୁ ଫେରିଲେ ।

ତା' ପରେ ଶଙ୍କର ପୁଣି ମାହିଷ୍ମତୀକୁ ଗଲେ । ଉଭୟ ଭାରତୀ ପରାଜୟ ମାନିଲେ ।

ପୂର୍ବକାଳରେ ଭାରତରେ ଏପରି ବିଦୁଷୀ ଥିଲେ, ଯେଉଁମାନେ ପୃଥିବୀ ବିଖ୍ୟାତ ପଣ୍ଡିତ ଶଙ୍କରାଚାର୍ଯ୍ୟଙ୍କ ସଙ୍ଗେ ବିଦ୍ୟାରେ ସମକକ୍ଷ ଥିଲେ ।

—※—

( ୨ )

# ପଦ୍ମିନୀ

ରାଜପୁତନା ରାଜପୁତମାନଙ୍କର ଦେଶ । ରାଜପୁତମାନେ ବୀର ଜାତି, ଯୁଦ୍ଧରେ ମରନ୍ତି, ନୋହିଲେ ମାରନ୍ତି, ଯୁଦ୍ଧରୁ ପଳାଇ ଯାନ୍ତି ନାହିଁ । ଯୁଦ୍ଧରେ ଜିଣି ଶତ୍ରୁ ରାଜଧାନୀ ନେବା ଉପରେ ବସିଲେ, ସ୍ତ୍ରୀମାନେ ଗୋଟିଏ କୁଣ୍ଡରେ ନିଆଁ ଜାଳି ସେଥିରେ ପୋଡ଼ି ମରନ୍ତି । ଏହାକୁ ସେମାନେ ଜୌହରବ୍ରତ କହନ୍ତି ।

ରାଜପୁତନାର ମିବାର ରାଜ୍ୟର ରାଜଧାନୀ ଚିତୋର । ଯେତେବେଳେ ଆଲ୍ଲାଉଦ୍ଦିନ ଖିଲିଜି ଦିଲ୍ଲୀର ସମ୍ରାଟ୍ ଥିଲେ, ଲକ୍ଷ୍ମଣ ସିଂହ ଚିତୋରର ରାଣା ଥିଲେ । ତାଙ୍କ ବଦଳରୁ ତାଙ୍କ କକା ଭୀମସିଂହ ରାଜ୍ୟ ଚଳାଉଥିଲେ । ଭୀମସିଂହ ଲଙ୍କାର ରାଜା ହାମିର ଶଙ୍କର ଚୌହାନଙ୍କ ଝିଅ ପଦ୍ମିନୀଙ୍କୁ ବିଭା ହୋଇଥିଲେ ।

ଭୀମସିଂହଙ୍କ ପତ୍ନୀ ପଦ୍ମିନୀ ଭାରି ସୁନ୍ଦରୀ ଥିଲେ । ତାଙ୍କ ଶରୀରର ତେଜ ସୁନାପରି ଥିଲା । ଆଲ୍ଲାଉଦ୍ଦିନ ଅନ୍ୟର ରାଜ୍ୟ ଜିଣିବାକୁ ଯେପରି ଚାହାନ୍ତି, ସୁନ୍ଦରୀ ସ୍ତ୍ରୀଙ୍କୁ ମଧ୍ୟ ହାତ କରିବାକୁ ସେହିପରି ଚାହାନ୍ତି । ତାଙ୍କର ଉଆସରେ ଅନେକ ସୁନ୍ଦରୀ ଭାର୍ଯ୍ୟା ଥିଲେ । ତଥାପି ସେ ପଦ୍ମିନୀଙ୍କ ରୂପ କଥା ଶୁଣି ତାଙ୍କୁ ପାଇବେ ବୋଲି ବ୍ୟାକୁଳ ହେଲେ । ତାଙ୍କୁ ବଳପୂର୍ବକ ପତ୍ନୀ କରିବେ ବୋଲି ୧୩୦୦ ଖ୍ରୀଷ୍ଟାବ୍ଦରେ ଚିତୋର ଆକ୍ରମଣ କଲେ ।

ଆଲ୍ଲାଉଦ୍ଦିନ ଚିତୋର ପାଖରେ ଶିବିର ପକାଇ ଭୀମସିଂହଙ୍କ ନିକଟକୁ ଖବର ଦେଲେ ଯେ, ଯଦି ଭୀମସିଂହ ତାଙ୍କ ହାତରେ ପଦ୍ମିନୀଙ୍କୁ ଦେଇଦେବେ, ତେବେ ସେ ଚିତୋର ଆକ୍ରମଣ ଛାଡ଼ି ଚାଲିଯିବେ ।

ଭୀମସିଂହ ଏହି ପ୍ରସ୍ତାବ ଶୁଣି ନିଆଁ ହୋଇଗଲେ । ସେ କହିଲେ, "କ'ଣ, ମୁଁ ରାଜପୁତ ହୋଇ ଯୁଦ୍ଧକୁ ଡରିବି ! ଆଉ ବନ୍ଦୀ ହୋଇ ମୋ ପତ୍ନୀକୁ ମୁସଲମାନ ହାତରେ ଦେବି !"

ଅଲ୍ଲାଉଦ୍ଦିନ ଯୁଦ୍ଧରେ ହାରି ଦିଲ୍ଲୀକୁ ଫେରିଗଲେ । ସେ କିନ୍ତୁ ପଦ୍ମିନୀଙ୍କ କଥା ଭୁଲିପାରିଲେ ନାହିଁ । ନୂଆ ସୈନିକ, ଅଧିକ ସୈନ୍ୟ ଯୋଗାଡ଼ କରି ପୁଣି ଥରେ ଚିତୋର ଆକ୍ରମଣ କଲେ । ଏଥର ମଧ୍ୟ ସେ ଯୁଦ୍ଧରେ ପାରିଲେ ନାହିଁ ।

ଶେଷରେ ଅଲ୍ଲାଉଦ୍ଦିନ ପ୍ରସ୍ତାବ କଲେ, ଭୀମ ସିଂହ ତାଙ୍କୁ ଦର୍ପଣରେ ପଦ୍ମିନୀଙ୍କ ରୂପ ଦେଖାଇ ଦିଅନ୍ତୁ । ତେବେ ଯୁଦ୍ଧ ବନ୍ଦ ହେବ ।



ଅଲ୍ଲାଉଦ୍ଦିନ ଏକଲା ଚିତୋର ମଧ୍ୟକୁ ଗଲେ, ଭୀମସିଂହ ତାଙ୍କୁ ଦର୍ପଣରେ ପଦ୍ମିନୀଙ୍କ ରୂପ ଦେଖାଇ ଦେଲେ ଏବଂ ଦୁର୍ଗ ବାହାର ପର୍ଯ୍ୟନ୍ତ ତାଙ୍କୁ ଆଣି ଛାଡ଼ିଦେଇ ନିଜ ଭଦ୍ରତା ଦେଖାଇଲେ ।

ପଦ୍ମାଙ୍କ ରୂପ ଦେଖି ଅଲ୍ଲାଉଦ୍ଦିନ ତାଙ୍କୁ ପାଇବେ ବୋଲି ଅତ୍ୟନ୍ତ ବ୍ୟାକୁଳ ହେଲେ । ସେ ଦୁର୍ଗ ବାହାରେ ସୈନ୍ୟମାନଙ୍କୁ ଲୁଚାଇ ରଖିଥାନ୍ତି । ଭୀମସିଂହ ସେଠାକୁ ଆସନ୍ତେ, ସେ ସୈନ୍ୟବଳରେ ତାଙ୍କୁ ବନ୍ଦୀ କଲେ । ପଦ୍ମାଙ୍କୁ ଖବର ଦେଲେ, ସେ ତାଙ୍କ ରାଣୀ ହେଲେ, ଭୀମସିଂହଙ୍କୁ ମୁକ୍ତ ଦେବେ ।

ସମ୍ବାଦ ପାଇ ପଦ୍ମା ରାଗରେ ନିଆଁ ହୋଇଥିଲେ । ମୁସଲମାନ ଅଭଦ୍ରତା, ବିଶ୍ୱାସଘାତକତା ଦେଖାଇଛନ୍ତି । ସେ ତାଙ୍କୁ ଉଚିତ ଶିକ୍ଷା ଦେବେ ସେ ଜାଣନ୍ତୁ, ରାଜପୁତ ରମଣୀ ସତୀତ୍ୱକୁ କେତେ ବଡ଼ ବୋଲି ମନେକରେ, ତା'ର ଶିକ୍ଷାଦୀକ୍ଷା କେତେ, ତାର ବୁଦ୍ଧି କେତେ ।

ପଦ୍ମା ଭୀମସିଂହଙ୍କୁ ମୁକୁଳାଇବା ଲାଗି ଉପାୟ ଠିକ୍ କଲେ । ରାଣୀଙ୍କ ଯୋଗ୍ୟ ଗୋଟିଏ ଶିବିକା ବାହାର କଲେ ଏବଂ ତା' ସାଙ୍ଗକୁ ଆହୁରି ସାତ ଶହ ଶିବିକା ଯୋଗାଡ଼ କଲେ । ଅଲ୍ଲାଉଦ୍ଦିନଙ୍କୁ ଉତ୍ତର ଦେଲେ, ସେ ସାତଶହ ଦାସୀଙ୍କୁ ସାତଶହ ପାଲିଙ୍କିରେ ବସାଇ ନିଜେ ଗୋଟିକରେ ବସି ଅଲ୍ଲାଉଦ୍ଦିନଙ୍କର ପତ୍ନୀ ହେବାକୁ ଯିବେ ।

ଅଲ୍ଲାଉଦ୍ଦିନ ବଡ଼ ଖୁସି ହୋଇ ତାଙ୍କ ଆସିବାକୁ ଅପେକ୍ଷା କରି ରହିଲେ ।

ପ୍ରତି ଶିବିକା ଭିତରେ ଜଣେ ଜଣେ ଉତ୍କୃଷ୍ଟ ଯୋଦ୍ଧା ବସିଲେ ଏବଂ ଛଅ ଜଣ ଉତ୍କୃଷ୍ଟ ଯୋଦ୍ଧା ପ୍ରତି ଶିବିକା ବୋହିଲେ । ଶିବିକା ଭିତରେ ସାତ ଜଣ ଯୋଦ୍ଧାଙ୍କ ଅସ୍ତ୍ରଶସ୍ତ୍ର ରଖାହେଲା । ପଦ୍ମା ଦୁର୍ଗ ଭିତରେ ରହି, ବାହାରର ସବୁ କଥା ଦେଖୁଥାନ୍ତି ।

ଶିବିକାମାନ ଆସୁଥିବା ଦେଖି ଅଲ୍ଲାଉଦ୍ଦିନଙ୍କ ମନ ଆନନ୍ଦରେ ନାଚିଲା । ତାଙ୍କ ମୁଣ୍ଡରେ ପଦ୍ମାଙ୍କୁ ପାଇବା ଛଡ଼ା ଆଉ ଅନ୍ୟ ବୁଦ୍ଧି କିଛି ଖେଳିଲା ନାହିଁ । ଜଣେ ଯାଇ ଅଲ୍ଲାଉଦ୍ଦିନଙ୍କୁ କହିଲା, "ପଦ୍ମା ଭୀମସିଂହଙ୍କୁ ଶେଷ ଥର ପାଇଁ ଦେଖା କରିବାକୁ ଚାହାନ୍ତି ।"

ଅଲ୍ଲାଉଦ୍ଦିନ ନାରୀର ବୁଦ୍ଧି କଥା କିଛି ଭାବି ପାରିଲେ ନାହିଁ । ସେ ଭୀମସିଂହଙ୍କୁ ଛାଡ଼ି ଦେଲେ । ଭୀମସିଂହ ଗୋଟିଏ ଘୋଡ଼ାରେ ବସି ଦୁର୍ଗ ମଧ୍ୟକୁ ଲୁଚି ପଶିଗଲେ । ଘୋଡ଼ା ସେପରି ଯୋଗାଡ଼ କରା ଯାଇଥିଲା ।

ଅଲ୍ଲାଉଦ୍ଦିନ ଦେଖିଲେ, ପଦ୍ମାଙ୍କ ଆସିବାରେ ବିଳମ୍ବ ଘଟୁଛି । ସେ ନିଜେ ଖବର ବୁଝିବାକୁ ଗଲେ । ନାହିଁ ପଦ୍ମା ନାହାନ୍ତି, ନା ଭୀମସିଂହ ନାହାନ୍ତି ! ସେ ବୁଝି ପାରିଲେ, ରାଜପୁତ ରମଣୀ ତାଙ୍କୁ ବୁଦ୍ଧିରେ ହରାଇ ଦେଇଛି ।

ଶିବିକା ସଙ୍ଗେ ଥିବା ପାଞ୍ଚ ହଜାର ରାଜପୁତ ସୈନ୍ୟ ଅଲ୍ଲାଉଦ୍ଦିନଙ୍କ ସଙ୍ଗେ ଯୁଦ୍ଧରେ ମାତିଲେ । ଯୁଦ୍ଧରେ ସମସ୍ତେ ମଲେ । ଅଲ୍ଲାଉଦ୍ଦିନ ରାଗରେ ଦୁର୍ଗ ଧ୍ୱଂସ କଲେ । ଯୁଦ୍ଧରେ ଭୀମସିଂହଙ୍କୁ ବଧ କଲେ, ସବୁ ରାଜପୁତ ବୀରଙ୍କୁ ହାଣିଲେ, ଚିତୋରକୁ ଶ୍ମଶାନ କଲେ । କିନ୍ତୁ ପଦ୍ମାଙ୍କୁ ପାଇଲେ ନାହିଁ ।

ପଦ୍ମା ଦୁର୍ଗ ମଧ୍ୟରେ ଜୋହର ଦ୍ୱାରା ଆତ୍ମହତ୍ୟା କଲେ । ରାଜପୁତ ସ୍ତ୍ରୀ ସତୀତ୍ୱକୁ ପ୍ରାଣ ଅପେକ୍ଷା ଅଧିକ ପ୍ରିୟ ମଣେ ।



( ୩ )

## ଧାତ୍ରୀ ପାନ୍ନା

ବାବର ୧୫୨୭ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀର ଇବ୍ରାହିମ ଲୋଦୀଙ୍କୁ ପରାସ୍ତ କରି ଭାରତ ସିଂହାସନ ଅଧିକାର କଲେ । ଚିତୋରର ରାଣା ସଂଗ୍ରାମ ସିଂହ ତାଙ୍କୁ ଭାରତରୁ ତଡ଼ି ଦେବେ ବୋଲି ଯୁଦ୍ଧ କଲେ । କିନ୍ତୁ ସେ ସିକ୍ରି ବା କାନୁଆ ଯୁଦ୍ଧରେ ନିହତ ହେଲେ । ଏହି ଯୁଦ୍ଧ ପରେ ସଂଗ୍ରାମଙ୍କର ଶିଶୁପୁତ୍ର ଉଦୟ ସିଂହ ଚିତୋର ସିଂହାସନରେ ଅଭିଷିକ୍ତ

ହେଲେ । ତାଙ୍କ ପକ୍ଷରୁ ସଙ୍ଗ୍ରାମଙ୍କ ଭ୍ରାତୁଷ୍ପୁତ୍ର ବନବୀର ରାଜ୍ୟରକ୍ଷା କଲେ । ଉଦୟଙ୍କ ଲାଳନପାଳନ ଭାର ପାନ୍ନାନାମ୍ନୀ ଏକ ଧାତ୍ରୀ ହସ୍ତରେ ଅର୍ପିତ ହୋଇଥିଲା । କ୍ଷମତାମୋହ ଲୋକଙ୍କୁ ହିତାହିତ ଜ୍ଞାନଶୂନ୍ୟ କରି ପକାଏ । କିଛି ଦିନ ରାଜକ୍ଷମତା ପରିଚାଳନ କରି ବନବୀର ଶିଶୁ ଉଦୟ ସିଂହଙ୍କୁ ବଧକରି ସିଂହାସନର ଅଧିକାରୀ ହେବେ ବୋଲି ବ୍ୟାକୁଳ ହେଲେ ।

ଦିନେ ସାନ୍ଧ୍ୟ ଅନ୍ଧକାର ଭୁବନ ମୁଖକୁ ଅବଗୁଣ୍ଠିତ କରିବାର ଅଳ୍ପ କ୍ଷଣ ପରେ ଚିତୋର ରାଜଅନ୍ତଃପୁରରେ ଏକ ଭୀଷଣ କୋଳାହଳ ଶୁଣାଗଲା । ପାନ୍ନା ଶୁଣିପାରିଲା, ବନବୀର ସଙ୍ଗ୍ରାମଙ୍କର ଅନ୍ୟତମ ପୁତ୍ର ବିକ୍ରମାଜିତଙ୍କୁ ବଧ କରିଛନ୍ତି । ସେ ବନବୀରଙ୍କ ଦୁରଭିସନ୍ଧି ବୁଝି ପାରି ସୁପ୍ତ ଉଦୟ ସିଂହଙ୍କୁ ଏକ ପେଟିକା ମଧ୍ୟରେ ଶୁଆଇ ଜଣେ ବାରିକ ହସ୍ତରେ ଦୁର୍ଗ ବାହାରକୁ ପଠାଇଦେଲା । ସେ ଉଦୟସିଂହଙ୍କ ଚନ୍ଦ୍ର ନିର୍ମିତ ଦୋଳାରେ ନିଜର ଏକମାତ୍ର ନୟନମଣି ଶିଶୁପୁତ୍ରକୁ ଶୁଆଇଦେଇ ଉଦ୍‌ବିଗ୍ନ ମନରେ ବନବୀରଙ୍କ ଆଗମନ ପ୍ରତୀକ୍ଷା କଲା ।

ଦୁରାଗ୍ରହ ବନବୀର କ୍ଷମତାମଦାନ୍ଧ ହୋଇ ହିଂସ୍ର କୃତାନ୍ତ ବେଶରେ ପାନ୍ନା ସମ୍ମୁଖରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ପାନ୍ନା କଦଳୀପତ୍ର ପରି ଥରିବାକୁ ଲାଗିଲା । ବନବୀର ପଚାରିଲେ, ଉଦୟ କାହିଁ ? ସନ୍ତ୍ରସ୍ତା ଜଡ଼ିଭୂତା ପାନ୍ନାର ମୁଖରୁ ବାକ୍ୟସ୍ଫୁରଣ ହୋଇପାରିଲା ନାହିଁ । ସେ ଅଙ୍ଗୁଳି ନିର୍ଦ୍ଦେଶ କରି ଉଦୟଙ୍କ ଦୋଳାରେ ଶୁପ୍ତ ନିଜ ଶିଶୁ ସନ୍ତାନକୁ ଦେଖାଇଦେଲା ।

ମନୁଷ୍ୟତା ଓ ବିବେକବୁଦ୍ଧି ସେତେବେଳେ ବନବୀରଙ୍କୁ ପରିତ୍ୟାଗ କରିଥିଲା—ସେ ଏକ ହିଂସ୍ରଜନ୍ତୁରେ ପରିଣତ ହୋଇଥିଲା । ଦୋଳାରେ ଶାୟିତ ଶିଶୁ ପ୍ରକୃତରେ ଉଦୟସିଂହ କି ନୁହେଁ, ସେ କଥା ପରୀକ୍ଷା କରିବା ନିମନ୍ତେ ସେ ବିବେଚନା କରିପାରିଲା ନାହିଁ । କୃପାଣର ପ୍ରଚଣ୍ଡ ପ୍ରହାରରେ ସୁଖସୁପ୍ତ ନିରପରାଧ ଶିଶୁର ମସ୍ତକ ଛେଦନପୂର୍ବକ ଆତତାୟୀ ସିଂହାସନ ହସ୍ତଗତ କରିଛି ବୋଲି ମନେକରି ନିଜ କକ୍ଷକୁ ପ୍ରତ୍ୟାବର୍ତ୍ତନ କଲା ।

ଏବେ ପାନ୍ନାର ମାତୃ ହୃଦୟ କମ୍ପିତ ନିସ୍ତବ୍ଧ ରହିଲା । ସ୍ୱୀୟ ସନ୍ତାନର ବଧ ସାଧନ କରାଇ ବୀରରମଣୀର ନେତ୍ରରୁ ଲୋତକ ଧାରା ପ୍ରବହିଲା ନାହିଁ । ତା'ର ମାତୃହୃଦୟ ଆଜି ଦୁର୍ବଳତାଠାରୁ ଅନେକ ଉଚ୍ଚରେ । ଉଦୟସିଂହଙ୍କ ଜୀବନ ରକ୍ଷା ଭାର ତା ହସ୍ତରେ ନ୍ୟସ୍ତ । ରାଜ ଅନ୍ନରେ



ପ୍ରତିପାଳିତା ହୋଇ ଯଦି ରାଜମସ୍ତକ ରକ୍ଷା ନ କଲେ ସେହି କର୍ତ୍ତବ୍ୟରୁ ନିଷ୍କୃତି ମିଳିବ କିପରି ? ଉଦୟସିଂହ ବଞ୍ଚିଥିଲେ ଚିତୋର ରାଣାବଂଶର ରକ୍ଷା ହେବ, ଚିତୋରର ହୃତ ଗୌରବ ଫେରିଆସିବ । ଉଦୟ ସିଂହଙ୍କ ପ୍ରାଣରକ୍ଷା ନିମନ୍ତେ ନିଜ ପୁତ୍ରକୁ ବଳିଦେଇ ସେ କର୍ତ୍ତବ୍ୟ ମାତ୍ର ସମ୍ପାଦନ କରିଛି, କିନ୍ତୁ ସେହି କର୍ତ୍ତବ୍ୟ ଏ ଅବଧି ସମ୍ପୂର୍ଣ୍ଣ ହୋଇନାହିଁ । ଶୋକାବେଗ ଦେଖାଇବାର, ବ୍ୟାକୁଳତା ପ୍ରକାଶ କରିବାର ସମୟ ଏହା ନୁହେଁ । କଠୋର କର୍ତ୍ତବ୍ୟର ସମ୍ମୁଖରେ ହୃଦୟ ଦୌର୍ବଲ୍ୟ ନିରୋଧ କରିବାକୁ ହେବ । ହୃଦୟକୁ ବଜ୍ରପରି ଦୃଢ଼କରି ଧୀର ସ୍ଥିର ପଦକ୍ଷେପରେ ପାନ୍ନା ଦୁର୍ଗ ମଧ୍ୟରୁ ବହିର୍ଗତ ହେଲା । ଚତୁର୍ଦ୍ଦିଗରେ କୃଷ୍ଣା ଚତୁର୍ଦ୍ଦଶୀର ବିରାଟ ଅନ୍ଧକାର, ହୃଦୟ ମଧ୍ୟରେ ବିରାଟ ବିଷାଦର କାଳିମା, ସମ୍ମୁଖରେ କଠୋର କର୍ତ୍ତବ୍ୟର ଉଗ୍ର ରୂପ ।

ଦୁର୍ଗର ବହିର୍ଭାଗରେ ବାରିକ ପାନ୍ନାର ନିର୍ଦ୍ଦେଶ ଅନୁସାରେ ଅପେକ୍ଷା କରିଥିଲା । ଉଭୟେ ଉଦୟଙ୍କୁ ସଙ୍ଗେ ନେଇ ସାମନ୍ତ ରାଜ୍ୟ

କମଳମୀରକୁ ପ୍ରସ୍ଥାନ କଲେ । କମଳମୀରର ରାଜା ଆଶଶା ନରହନ୍ତା ବନବୀରଙ୍କ ବକ୍ରଦୃଷ୍ଟିରେ ପଡ଼ିବା ଭୟରେ ଉଦୟସିଂହଙ୍କୁ ଆଶ୍ରୟ ଦେବାକୁ ସମ୍ମତ ପ୍ରକାଶ କଲେ ନାହିଁ । ତାଙ୍କର ମାତା କହିଲେ, "ବତ୍ସ ! ତୁମ୍ଭେ ମେବାରର ସାମନ୍ତ, ଉଦୟସିଂହ ତୁମ୍ଭର ପ୍ରଭୁ । ତାଙ୍କୁ ରକ୍ଷା କରିବା ତୁମ୍ଭର କର୍ତ୍ତବ୍ୟ । କର୍ତ୍ତବ୍ୟ ପାଳନ କଲେ ଭଗବାନ୍ ସନ୍ତୁଷ୍ଟ ହୁଅନ୍ତି ଏବଂ ପ୍ରାଣୀର ମଙ୍ଗଳ କରନ୍ତି । ବୀରୋଚିତ ସାହସରେ କର୍ତ୍ତବ୍ୟ ପାଳନ କର ।" ଜନନୀଙ୍କ ଆଦେଶ ଶିରୋଧାର୍ଯ୍ୟ କରି ଆଶଶା ଶିଶୁରାଜାଙ୍କୁ ଆଶ୍ରୟ ପ୍ରଦାନ କଲେ । ଧରା ପଡ଼ିବା ଭୟରେ ପାନ୍ନା ଓ ବାରିକ ଚିତୋରକୁ ପ୍ରତ୍ୟାବର୍ତ୍ତନ କଲେ ।

କାଳକ୍ରମେ ଉଦୟସିଂହଙ୍କର ବୟୋବୃଦ୍ଧି ହେଲା । ଜନଶ୍ରୁତି ଶତକଣ୍ଠ ଧାରଣ କରି ତାଙ୍କ ବଞ୍ଚିଥିବା ବାର୍ତ୍ତା ଚତୁର୍ଦ୍ଦିଗରେ ପ୍ରଚାର କଲା । ଆନନ୍ଦରେ ଅଧୀର ହୋଇ ସାମନ୍ତ ତଥା ପ୍ରଜାକୁଳ ନରହନ୍ତା ପାପିଷ୍ଠ ବନବୀରଙ୍କୁ ରାଜ୍ୟରୁ ବିତାଡ଼ିତ କଲେ । ୧୫୬୭ ଖ୍ରୀଷ୍ଟାବ୍ଦରେ ମୋଗଲ୍ ସମ୍ରାଟ ଆକବର ଯେତେବେଳେ ଚିତୋର ଆକ୍ରମଣ କଲେ, ଏହି ଉଦୟସିଂହଙ୍କ ସଙ୍ଗେ ତାଙ୍କୁ ଯୁଦ୍ଧ କରିବାକୁ ପଡ଼ିଥିଲା । ତାଙ୍କ ଔରସରେ ହିଁ ପୃଥିବୀ ଇତିହାସରେ ସଂକୀର୍ତ୍ତିତ ନାମା ରାଣା ପ୍ରତାପସିଂହ ଜନ୍ମଗ୍ରହଣ କରିଥିଲେ ।

ଜଣେ ସାମାନ୍ୟ ପରିଚାରିକା ପାନ୍ନାର କି ଉଚ୍ଚ କର୍ତ୍ତବ୍ୟଜ୍ଞାନ ଓ ଦେଶଭକ୍ତି ! ତାହାରି ସାହସ ଓ ତ୍ୟାଗରେ ହିଁ ମେବାର ରାଜବଂଶର ରକ୍ଷା ହେଲା । ଭାରତ ଇତିହାସରେ ପାନ୍ନାର ଆସନ କେତେ ଉଚ୍ଚରେ ! ଏପରି ରମଣୀ ପୃଥିବୀରେ କେତେ ଜଣ ?



( ୪ )

# ଚାନ୍ଦବୀବୀ

ଯେତେବେଳେ ଆକବର ଦିଲ୍ଲୀର ମୋଗଲ ସମ୍ରାଟ୍ ଥିଲେ, ଦାକ୍ଷିଣାତ୍ୟରେ ଅହମ୍ମଦ ନଗର ଓ ବିଜାପୁର ଦୁଇଟି ମୁସଲମାନ ରାଜ୍ୟ ଥିଲା । ଅହମ୍ମଦ ନଗର ସୁଲତାନଙ୍କ ଝିଅ ଚାନ୍ଦବୀବୀ ବିଜାପୁର ସୁଲତାନଙ୍କୁ ବାହା ହୋଇଥିଲେ । କିନ୍ତୁ ସେ ବିଧବା ହୋଇଯିବାରୁ ବାପଘରକୁ ଆସି ସେଠାରେ ରହୁଥିଲେ । ସେତେବେଳେ ତାଙ୍କ ଭାଇ ଅହମ୍ମଦ ନଗରର ସୁଲତାନ ହୋଇଥିଲେ ।

ଚାନ୍ଦବୀବୀଙ୍କ ଭାଇ ଅହମ୍ମଦ ନଗର ସୁଲତାନ ମଧ୍ୟ ମରିଗଲେ । ତାଙ୍କ ଶିଶୁ ପୁଅ ସିଂହାସନରେ ବସିଲେ । ଚାନ୍ଦବୀବୀ ଶିଶୁ ରାଜାଙ୍କ ପକ୍ଷରୁ ସୁଷ୍ଠୁ ରୂପେ ରାଜକାର୍ଯ୍ୟ ଚଳାଇଲେ ।

ଚାନ୍ଦବୀବୀ ଏକ ଚତୁର ସ୍ତ୍ରୀ ଥିଲେ । ସେ ଭଲ ରୂପେ ଯୁଦ୍ଧ କରି ପାରୁଥିଲେ । ଯୁଦ୍ଧବେଳେ ଘୋଡ଼ା ପିଠିରେ ଚଢ଼ି ସେନାପତି କାମ କରୁଥିଲେ । ଘୋଡ଼ାପିଠିରେ ବସି ମୃଗୟା କରୁଥିଲେ । ସେ ଆରବୀ ଫାର୍ସୀ, ତୁର୍କ, ମରହଟ୍ଟା ଓ କାନାଡ଼ୀ ଏପରି ପାଞ୍ଚଟି ଭାଷା ଜାଣିଥିଲେ ଏବଂ ସେଥିରେ ଭଲ ରୂପେ କଥାବାର୍ତ୍ତା କରି ପାରୁଥିଲେ ସେ ସୁନ୍ଦର ଚିତ୍ର ଆଙ୍କି ପାରୁଥିଲେ । ଏବଂ ସିତାର ବଜାଇ ଭଲ ସଙ୍ଗୀତ ବୋଲି ପାରୁଥିଲେ ।



ଚାନ୍ଦବୀବୀ

ଚାନ୍ଦବୀବୀଙ୍କ ଶାସନରେ ରାଜ୍ୟର ଉନ୍ନତି ହେଲା । କିନ୍ତୁ ସେତେବେଳେ ତାଙ୍କ ଦରବାରରେ ଦୁଇଟି ଦଳ ଥିଲେ । ଗୋଟିଏ ଦଳ ଚାନ୍ଦବୀବୀଙ୍କୁ ଭଲ ଚାହୁଁଥିଲେ ତ, ଅନ୍ୟଦଳ ତାଙ୍କ ବିପକ୍ଷରେ ରହୁଥିଲେ । ଚାନ୍ଦବୀବୀଙ୍କ ବିପକ୍ଷ ଦଳ କହୁଥିଲେ, ଜଣେ ସ୍ତ୍ରୀ ଆମ ଉପରେ ହୁକୁମ ଚଳାଇବ ନାହିଁ, ଆମେ ତାହା ବରଦାସ୍ତ କରିବୁ ନାହିଁ । ସେମାନେ ରାଜ୍ୟରେ ଗୋଳମାଳ କଲେ ।

ଦିଲ୍ଲୀର ସମ୍ରାଟ୍ ଆକବର ଏପରି ସୁଯୋଗ ଖୋଜୁଥିଲେ । ଆହମ୍ମଦନଗରରେ ଗୋଳମାଳ ହେଲେ ସେଠାରେ ବଳ ହେବେ, ତାହାଙ୍କୁ ସେହି ରାଜ୍ୟ ଜିଣି ନେବାକୁ ସୁବିଧା ହେବ । ସେ ଆହମ୍ମଦ ନଗର ଆକ୍ରମଣ କଲେ ।

ମୋଗଲ ସୈନ୍ୟମାନଙ୍କ ଆକ୍ରମଣରେ ଚାନ୍ଦବିବି ଆଦୌ ଡରିଲେ ନାହିଁ । ତାଙ୍କ ଦେହରେ ଯେତିକି ସାହସ, ସେତିକି ବଳ ଥିଲା । ସେ ପୁରୁଷ ବେଶରେ ଘୋଡା ଚଢ଼ି ଅହମଦନଗର ଦୁର୍ଗ ଜଗି ରକ୍ଷା କଲେ । ସୈନ୍ୟ, ଗୋଳା ବାରୁଦ, ଅସ୍ତ୍ର ଶସ୍ତ୍ର ଯେଉଁଠି ଯାହା ରଖିବା କଥା ସବୁ ସଜାଇ ରଖିଲେ । ସୈନ୍ୟମାନଙ୍କୁ ଯାହା ଯାହା କରିବା କଥା ବୁଲି ବୁଲି ଉପଦେଶ ଦେଲେ ।

ମୋଗଲମାନେ ଅନେକ ଦିନ ପର୍ଯ୍ୟନ୍ତ ଦୁର୍ଗ ଘେରି ରହିଲେ । ଚାନ୍ଦବିବିଙ୍କ ସୈନିକମାନେ ଦୁର୍ଗର ଗମ୍ବୁଜ ଉପରୁ ତୋପ ଚଳାଇ ସେମାନଙ୍କୁ ନିପାତ କରୁଥାନ୍ତି, ନ ହେଲେ ଦୂରକୁ ତଡ଼ୁଥାନ୍ତି । ମୋଗଲ-ମାନେ ତଳୁ ତୋପ ଚଳାଇ ଚାନ୍ଦବିବିଙ୍କ ସୈନ୍ୟମାନଙ୍କୁ ମାରୁଥାନ୍ତି, ଦୁର୍ଗର ପାଚେରିକୁ ଭାଙ୍ଗିବାର ଚେଷ୍ଟା କରୁଥାନ୍ତି । ଦୁର୍ଗ ପାଚେରି ଖୁବ୍ ଟାଣ ଓ ଉଚ୍ଚ ଥିଲା । ତେଣୁ ମୋଗଲମାନେ ଦୁର୍ଗର କିଛି କ୍ଷତି କରି ପାରୁ ନ ଥାନ୍ତି ।

ଆକବରଙ୍କ ସୈନ୍ୟମାନେ ଏପରି ବହୁତ ଦିନଯାଏ ଚେଷ୍ଟା କଲେ । ଶେଷରେ ସେମାନେ ପାଚେରି ତଳେ ସ୍ଥାନରେ ଗାତ ଖୋଳି ସେଥିରେ ବାରୁଦ ଭର୍ତ୍ତି କରି ଦୁର୍ଗପାଚେରି ଭାଙ୍ଗିଦେବାକୁ ଚେଷ୍ଟା କଲେ । ଚାନ୍ଦବିବି ଏତେ ସଜାଗ ଥାନ୍ତି ଯେ ସେମାନେ ବାରୁଦ ରଖିବା ମାତ୍ରେ ଭିତର ପଟୁ ଫୋଡ଼ି କରି ବାରୁଦତକ ନେଇ ଯାନ୍ତି । ପୁଣି ଫୋଡ଼ତକ ମରାମତି କରି ପକାନ୍ତି ।

ଭୁଲ କ୍ରମେ ଚାନ୍ଦବିବିଙ୍କ ସୈନିକମାନେ ଗୋଟିଏ ଗାତର ବାରୁଦ ପରିଷ୍କାର କରି ପାରି ନ ଥିଲେ । ମୋଗଲମାନେ ତାହା ଠିକ ଧରିଲେ ଏବଂ ସେଥିରେ ତରତରରେ ଯାଇ ନିଆଁ ଲଗାଇଲେ । ପାଚେରିଟା ସେହି ସ୍ଥାନରେ ଫାଟି ଗୋଟିଏ ବଡ଼ ଫୋଡ଼ ହୋଇଗଲା ।

ରୁଦବାଣୀ ତଥାପି ଡରିଲେ ନାହିଁ, କି ଅସାହସ ହେଲେ ନାହିଁ । ସେ ବୁଝିଲେ, ମୋଗଲମାନେ ସେହି ଫୋଡ଼ ବାଟେ ଦୁର୍ଗ ଭିତରକୁ ଜଣ ଜଣ ହୋଇ ଝୁସାଇ ପଶିବେ । ସେ ନିଜେ ଫୋଡ଼ର ବାଟରେ ଜଗି ବସିଲେ, ସୈନିକମାନଙ୍କୁ ସେଠି ଜମା କଲେ ଏବଂ ମୋଗଲ ସୈନିକମାନେ ମୁଣ୍ଡ ପୂରାଇବା ମାତ୍ରେ ହାଣି ଦେବାକୁ ଆଦେଶ ଦେଲେ । ଅନେକ ମୋଗଲ ହାଣ ଖାଇଲେ, ଦୁର୍ଗ ଭିତରକୁ ପଶିପାରିଲେ ନାହିଁ ।

ରୁଦବାଣୀ ତେଣେ ଫାଟର ମରାମତି କାମ ମଧ୍ୟ ଚଳାଇ ଥାନ୍ତି । ଶେଷରେ ଫୋଡ଼ଟି ପୂରା ମରାମତି ହୋଇଗଲା ।

ମୋଗଲ ସେନାପତି ଆକବରଙ୍କ ପୁଅ ମୁରାଦ ଶେଷରେ ହାର ମାନିଲେ । ଦୁର୍ଗ ନେଇ ପାରିଲେ ନାହିଁ, କି ରୁଦବାଣୀଙ୍କୁ ଜିଣି ପାରିଲେ ନାହିଁ ।

ମୁରାଦ ସନ୍ଧି କଲେ । ବେରାର ବୋଲି ଖଣ୍ଡିଏ ଶ୍ରେଷ୍ଠ ପ୍ରଦେଶ ପାଇଲେ, ଆଉ ଯୁଦ୍ଧ କରିବେ ନାହିଁ ବୋଲି ସ୍ୱୀକାର କଲେ । ରୁଦବାଣୀଙ୍କ ଯୋଗୁଁ ଏଡ଼େବଡ଼ ସମ୍ରାଟ୍ ଆକବର ସେଥର ଆହମ୍ମଦ ନଗର ରାଜ୍ୟ ନେଇ ପାରିଲେ ନାହିଁ ।

ରୁଦବାଣୀ ସ୍ତ୍ରୀ ହେଲେ କଣ ହେବ ? ବୀର ପୁରୁଷମାନେ ମଧ୍ୟ ତାଙ୍କ ପରି ସାହାସ ଦେଖାଇ ପାରିବେ ନାହିଁ ।

———

( ୪ )

## ଦୁର୍ଗାବତୀ

ଆଧୁନିକ ଝାନସୀ ଓ ବାନ୍ଦା ଜିଲ୍ଲା ମଧ୍ୟରେ ମେହୋବା ବୋଲି ଏକ ରାଜ୍ୟ ଥିଲା । ସେଠାରେ ମୋଗଲ ସମ୍ରାଟ୍ ଆକବରଙ୍କ ସମୟରେ ଚନ୍ଦେଲ ରାଜପୁତ ବଂଶର ରାଜା ଶାଳିବାହନ ରାଜତ୍ୱ କରୁଥିଲେ । ତାଙ୍କ କନ୍ୟାର ନାମ ଦୁର୍ଗାବତୀ ।

ରାଜପୁତ ବଂଶରେ ଜନ୍ମ ଲଭକରି ଦୁର୍ଗାବତୀ ସେହି ବଂଶର ସମସ୍ତ ସୁଗୁଣର ଅଧିକାରିଣୀ ଥିଲେ । ସେ ଧନୁଶର ଓ ବନ୍ଧୁକ ଧରି ଯୁଦ୍ଧକରି ପାରୁଥିଲେ । ତାଙ୍କ ଦେହରେ ଅସୀମ ଧୈର୍ଯ୍ୟ, ସାହସ ଓ ବଳ ଥିଲା । ସେ ଯୁଦ୍ଧରେ ସେନାପତି କାର୍ଯ୍ୟ ଚଳାଇ ପାରୁଥିଲେ । ତାଙ୍କର ଯୁଦ୍ଧ-କୌଶଳ ଦେଖି ସେତେବେଳେ ରାଜାମାନେ ବିସ୍ମିତ ହେଉଥିଲେ ।

ଆଧୁନିକ ମଧ୍ୟ-ପ୍ରଦେଶର ଉତ୍ତର ପାଖରେ ଗଣ୍ଡୱାନା ଅଞ୍ଚଳରେ ଗଡ଼ମଣ୍ଡଳ ବୋଲି ଏକ ରାଜ୍ୟ ଥିଲା । ଦୁର୍ଗାବତୀ ଗଡ଼ମଣ୍ଡଳର ଗଣ୍ଡରାଜା ଦଲପତ୍ ସିଂହଙ୍କ ସ୍ତ୍ରୀ ହୋଇଥିଲେ । ଦଲପତ୍ ବିବାହର ଅଳ୍ପଦିନ ପରେ ମୃତ୍ୟୁମୁଖରେ ପଡ଼ିବାରୁ ତାଙ୍କର ଏକମାତ୍ର ଶିଶୁପୁତ୍ର ବୀର ନାରାୟଣଙ୍କୁ ସିଂହାସନରେ ବସାଇ ତାଙ୍କ ପକ୍ଷରୁ ଦୁର୍ଗାବତୀ ଅତି ସୁନ୍ଦର ରୂପେ ରାଜ୍ୟ ପରିଚାଳନା କରିଥିଲେ ।



ଦୁର୍ଗାବତୀ ଯେପରି ସୁନ୍ଦରୀ ଥିଲେ, ରାଜ୍ୟ ପରିଚାଳନାରେ ସେହିପରି ବୁଦ୍ଧିମତୀ ଓ କୁଶଳା ଥିଲେ ଏବଂ ଯୁଦ୍ଧ କ୍ଷେତ୍ରରେ ସେହିପରି ପଟୁତା ଓ ବୀର୍ଯ୍ୟ ଦେଖାଉଥିଲେ । ମାଳବର ମୁସଲମାନ ରାଜା ବାଜବାହାଦୁରଙ୍କ ସଙ୍ଗେ ଦୁର୍ଗାବତୀଙ୍କର ଅନେକ ଥର ଯୁଦ୍ଧ ହୋଇଥିଲା । ପ୍ରତିଥର ଯୁଦ୍ଧରେ ଦୁର୍ଗାବତୀ ଜିତିଥିଲେ ।

ଗଡ଼କଣ୍ଟକ ଜଣେ ସ୍ତ୍ରୀଙ୍କଦ୍ୱାରା ଶାସିତ ହେଉଥିବା ଜାଣି ମୋଗଲ ଆକବର ରାଜା ହେବାର ଅଳ୍ପଦିନ ପରେ ନିଜ ସେନାପତି ଆସଫ୍ ଖାଁଙ୍କୁ ସେହି ରାଜ୍ୟ ଜିଣିବାପାଇଁ ପଠାଇଲେ । ଆସଫ୍ ଖାଁ ପ୍ରଥମେ ଦୁର୍ଗାବତୀଙ୍କ ସଙ୍ଗେ ସଖ୍ୟ ଭାବ ସ୍ଥାପନ କଲେ । ଦୁର୍ଗାବତୀଙ୍କ ବିଶ୍ୱାସ ଜାତ ହେଲାରୁ ସେ ୧୫୬୪ରେ ଛଅ ହଜାର ଅଶ୍ୱାରୋହୀ ଓ ଦଶ ହଜାର ପଦାତିକ ସୈନ୍ୟ ନେଇ ସହସା ଦୁର୍ଗାବତୀଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଯାତ୍ରା କଲେ ।

ଦୁର୍ଗାବତୀ ଏପରି ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ନଥିଲେ । ତାଙ୍କର ସୈନ୍ୟମାନେ ଏଆଡ଼େ ସେଆଡ଼େ ଥିଲେ । କିନ୍ତୁ ଦୁର୍ଗାବତୀ ସେଥିରେ ବିଚଳିତ ବା ହତୋତ୍ସାହ ହେଲେ ନାହିଁ । ସେ କୌଣସି ମତେ ପାଞ୍ଚହଜାର ସୈନିକ ସଂଗ୍ରହ କଲେ ଏବଂ ନିଜେ ରଣଦୁର୍ଗା ବେଶରେ ହାତୀ ପିଠିରେ ଚଢ଼ି ଯୁଦ୍ଧକୁ ଅଗ୍ରସର ହେଲେ ।

ଦୁର୍ଗାବତୀଙ୍କ ଉତ୍ସାହରେ ତାଙ୍କର ପାଞ୍ଚହଜାର ସୈନିକ ଷୋହଳ ହଜାର ମୋଗଲ ସୈନିକଙ୍କ ସମ୍ମୁଖରେ ଭୀଷଣ ଯୁଦ୍ଧ କଲେ ଏବଂ ଅନେକ ଶତ୍ରୁଙ୍କୁ ଯୁଦ୍ଧରେ ନିହତ କଲେ । ଗଡ଼କଣ୍ଟକର ସୈନ୍ୟମାନେ ସଂଖ୍ୟାରେ ଊଣା ଥିଲେ ମଧ୍ୟ ସେମାନଙ୍କର ପରାକ୍ରମ ସହି ନପାରି ମୋଗଲ ସେନା ତ୍ରାହି ତ୍ରାହି ଡାକ ପକାଇଲା । ଆସଫ ଖାଁ ପ୍ରାଣ ନେଇ ପଳାଇଲେ । ଦୁର୍ଗାବତୀ ତାଙ୍କ ପଛେ ପଛେ ଗୋଡ଼ାଇଲେ, ଇତି ମଧ୍ୟରେ ରାତ୍ରୀ ଆସି ପହଞ୍ଚିଗଲା ।

ଦୁର୍ଗାବତୀଙ୍କ ସୈନିକମାନେ ଆଉ ଗୋଡ଼ାଇବାକୁ ରାଜି ହେଲେ ନାହିଁ । ସେମାନେ ସଂଖ୍ୟାରେ ଅଳ୍ପ ଥିଲେ ଏବଂ ଅପେକ୍ଷାକୃତ ସଂଖ୍ୟାରେ ଅଧିକ ସୈନ୍ୟଙ୍କ ସଙ୍ଗେ ଲଢ଼ି ଲଢ଼ି ଥକି ଯାଇଥିଲେ । ସେମାନେ ରାତିରେ ବିଶ୍ରାମ କରିବାକୁ ଦୁର୍ଗାବତୀଙ୍କୁ ପ୍ରାର୍ଥନା କଲେ ।

ଦୁର୍ଗାବତୀ ମନେ କଲେ, କିଛିକାଳ ବିଶ୍ରାମ ନେଇ ରାତିରେ ପୁଣି ମୋଗଲ ଶିବିର ଆକ୍ରମଣ କରିବେ ଏବଂ ମୋଗଲ ସେନାକୁ ରାଜ୍ୟ ସୀମାରୁ

ତଡ଼ ଦେବେ କମ୍ବା ଶତ୍ରୁଙ୍କୁ ସଂପୂର୍ଣ୍ଣରୂପେ ଧ୍ୱଂସ କରିଦେବେ । କିନ୍ତୁ ତାଙ୍କର ସୈନ୍ୟମାନେ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ତେଣୁ ଦୁର୍ଗାବତୀ ବାଧ୍ୟ ହୋଇ ନିଜ ଶିବିରକୁ ଫେରିଗଲେ ।

ଦୁର୍ଗାବତୀ ଶିବିରକୁ ଫେରି ଯାଇଥିବା ଜାଣି ଆସଫ ଖାଁ ଭାରି ଖୁସିରେ ନିଃଶ୍ୱାସ ମାରିଲେ । ପ୍ରଭାତ ନ ହେଉଣୁ ଗୋଟିଏ ପାହାଡ ଉପରେ ନେଇ କମାଣମାନ ବସାଇଲେ ଏବଂ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଲେ ।

ଦୁର୍ଗାବତୀ ଚନ୍ଦନ ନାମକ ହାତୀ ପିଠିରେ ବସି ଯୁଦ୍ଧକୁ ଗଲେ । ତାଙ୍କ ସଙ୍ଗେ ତାଙ୍କ ବୀର ପୁତ୍ର ବୀର ନାରାୟଣ ମଧ୍ୟ ଥିଲେ । ବୀର ନାରାୟଣ ତିନିଥର ମୋଗଲ ସେନାକୁ ଆକ୍ରମଣ କରି ସେମାନଙ୍କୁ ପଛକୁ ହଟାଇ ଦେଲେ । ନଅ ଘଣ୍ଟା ଯୁଦ୍ଧ ହେଲା ।

ଏହି ସମୟରେ ବୀର ନାରାୟଣ ମୋଗଲର ଅସ୍ତ୍ରରେ ଭୀଷଣ-ଭାବେ ଆହତ ହୋଇ ତଳେ ପଡ଼ିଗଲେ । ତାଙ୍କ ସୈନ୍ୟମାନେ ଏଥିରେ ହତୋତ୍ସାହ ହୋଇ କେତେକେ ପଳାୟନ କଲେ । ଆସଫ ଖାଁ ମନେ କଲେ, ତାଙ୍କର ସୁଯୋଗ ଆସିଲା । କେଉଁଆଡୁ ଗୋଟିଏ ଶର ଆସି ଦୁର୍ଗାବତୀଙ୍କ ଚକ୍ଷୁରେ ପଶିଗଲା । ଦୁର୍ଗାବତୀ ଶରକୁ ଜୋର କରି ଟାଣି ଆଣିଲେ, କିନ୍ତୁ ମୁନଟି ଭାଙ୍ଗି ଯାଇ ଆଖି ଭିତରେ ରହିଗଲା । ତଥାପି ସେ ଯୁଦ୍ଧ କରିବାକୁ ଲାଗିଲେ । ଆଉ ଗୋଟିଏ ଶର ଆସି ତାଙ୍କ ବେକରେ ବସିଗଲା । ଏହାକୁ ମଧ୍ୟ ସେ ଉପାଡ଼ି ପକାଇଲେ । ମୋଗଲମାନେ ବୃଷ୍ଟି ଶର ମାରିଲେ । ଦୁର୍ଗାବତୀଙ୍କ ହୋସ୍ ରହିଲା ନାହିଁ । ଅଧର ସିଂହ ନାମରେ ତାଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀ ଯୁଦ୍ଧ କ୍ଷେତ୍ରରୁ ପଳାଇ ଯିବା ନିମନ୍ତେ ଅନୁରୋଧ କଲା । ଦୁର୍ଗାବତୀ ଶତ୍ରୁ ସମକ୍ଷରୁ ପଳାଇ ଯାଇ ଜୀବନ ରକ୍ଷା କରିବାକୁ ରାଜି ହେଲେ ନାହିଁ ।

ଦୁର୍ଗାବତୀ ବୁଝିଲେ, ସେ ଯୁଦ୍ଧରେ ହାରିଛନ୍ତି । ତେବେ ଯୁଦ୍ଧ-କ୍ଷେତ୍ରରୁ ପଳାଇ ଯିବେ ନାହିଁ । ଫଳ ହେବ ଯେ ସେ ଶତ୍ରୁ ହାତରେ ବନ୍ଦୀ ହେବେ । ଶତ୍ରୁ ହାତରେ ବନ୍ଦୀ ହେବାକୁ ସେ ଘୃଣା କରୁଥିଲେ

ଯେଥିରେ ତାଙ୍କର ଇଜ୍ଜତରେ ବାଧା ହେବ । ତେଣୁ ସେ ନିଜ ଖଣ୍ଡା ନିଜ ଛାତିରେ ବସାଇ ଦେଇ ମୃତ୍ୟୁ ବରଣ କଲେ । ସେତେବେଳେ ଯୁଦ୍ଧ କ୍ଷେତ୍ରରେ ତାଙ୍କର ଯେଉଁ ଅଳ୍ପ ସଂଖ୍ୟକ ସୈନିକ ଥିଲେ, ସେମାନେ ଦୁର୍ଗାବତୀଙ୍କ ଦୃଷ୍ଟାନ୍ତ ଓ ସାହସରେ ଅନୁପ୍ରାଣିତ ହେଲେ ଏବଂ ଯୁଦ୍ଧ କ୍ଷେତ୍ରରେ ବହୁ ଶତ୍ରୁ ବଧ କରି ନିଜେ ଶତ୍ରୁଦ୍ୱାରା ନିହତ ହେଲେ ।

ଦୁର୍ଗାବତୀଙ୍କ ବୀରତ୍ୱ କଥା ସବୁ ଦିନ ଇତିହାସରେ ରହିଥିବ । ଏପରି ବୀରରମଣୀ ନିଶ୍ଚୟ ଭାରତର ଉଜ୍ଜ୍ୱଳ ରତ୍ନ ।

ଆକବର ଗଡ଼କଣ୍ଟକକୁ ନିଜ ରାଜ୍ୟରେ ମିଶାଇ ନେଇଥିଲେ ।

———

( ୭ )

## ଅହଲ୍ୟାବାଈ

ଅହଲ୍ୟାବାଈ ୧୭୩୫ ଖ୍ରୀଷ୍ଟାବ୍ଦରେ ମାଳବ ପ୍ରଦେଶର ଏକ ଛୋଟ ଗାଁରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଆନନ୍ଦ ରାଓ ଜଣେ ମରହଟ୍ଟା ଥିଲେ । ଅହଲ୍ୟାଙ୍କ ପିତା ମାତାଙ୍କର ଧର୍ମ ଉପରେ ମନ ଥିଲା ।

ଅହଲ୍ୟା ପିଲାଦିନେ ଗାଁର ପାଠଶାଳାରେ ସାମାନ୍ୟ ଶିକ୍ଷା ପାଇଥିଲେ । ତାଙ୍କ ଶିକ୍ଷକ ରାମାୟଣ ଓ ମହାଭାରତରୁ ତାଙ୍କୁ ବହୁ କଥା ଶିଖାଇ ଥିଲେ ।



ଥରେ ଇନ୍ଦୋରର ମରହଟ୍ଟା ରାଜା ମଲହର ରାଓ ଓ ତାଙ୍କ ପୁତ୍ର ଖଣ୍ଡେ ରାଓ ଅହଲ୍ୟାଙ୍କ ଗାଁ ବାଟେ ନିଜ ରାଜଧାନୀକୁ ଫେରୁଥିଲେ । ମଲହର ରାଓ

ଅହଲ୍ୟାଙ୍କୁ ସେଠାରେ ଦେଖିଲେ ଏବଂ ତାଙ୍କ ରୂପରେ ମୁଗ୍ଧ ହୋଇ ଦେଖି ତାଙ୍କୁ ଖଣ୍ଡେରାଓଙ୍କ ସଙ୍ଗେ ବିବାହ କରାଇବା ପ୍ରସ୍ତାବ କଲେ । ଆନନ୍ଦ ରାଓ ଆନନ୍ଦରେ ରାଜି ହେଲେ । ଧାଙ୍ଗେ ଧାଙ୍ଗେ ବାହାଘର ହେଲା । ଅହଲ୍ୟା ପତି ଘରକୁ ଗଲେ ।

ଅହଲ୍ୟାଙ୍କ ଚରିତ୍ର ଓ ବ୍ୟବହାରରେ ଶ୍ୱଶୁର ଘରର ସମସ୍ତେ ସୁଖୀ ହେଲେ ।

୧୭୫୩ ଖ୍ରୀଷ୍ଟାବ୍ଦରେ ଖଣ୍ଡେରାଓ ଗୋଟିଏ ଶତ୍ରୁ ଦୁର୍ଗ ନେବାକୁ ଯାଇ ସେଠାରେ ନିହତ ହେଲେ । ସେତେବେଳେ ଅହଲ୍ୟାଙ୍କୁ ଅଠର ବର୍ଷ ବୟସ, ତାଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ ଥିଲେ । ସେ ପତିଙ୍କ ସଙ୍ଗେ ସତୀ ହେବେ ବୋଲି ବାହାରିଲେ ।

ମଲହର ରାଓ ବିକଳ ହୋଇ କାନ୍ଦିଲେ । ସେ କହିଲେ, 'ମା, ମୋତେ ଜଣେ ଶୋକ ସମୁଦ୍ରରେ ଭସାଇ ଦେଇଗଲା । ତୁ ଥିଲେ ମୋର ପ୍ରାଣ ରହିବ । ତୁ ଏହି ଦୁଇ ଛୁଆଙ୍କ ସଙ୍ଗେ ମୋତେ ଶିଶୁ ପରି ପାଳନ କର ।'

ଅହଲ୍ୟା ବାଧ୍ୟ ହୋଇ ନିଜ ସତୀଯିବା ଇଚ୍ଛା ତ୍ୟାଗ କଲେ । ଶ୍ୱଶୁର ତାଙ୍କ ବୁଦ୍ଧି ଜାଣି ତାଙ୍କ ହାତରେ ରାଜ୍ୟ ବ୍ୟାପାରର ସବୁ ଭାର ଛାଡ଼ି ଦେଲେ । ବାରବର୍ଷ ପରେ ୧୭୬୫ରେ ମଲହର ରାଓ ଇହଲୀଳା ସାଙ୍ଗ କଲେ । ତେଣିକି ଅହଲ୍ୟାଙ୍କ ପୁଅ ମଲ୍ଲେ ରାଓ ହୋଲକାର ହେଲେ, କିନ୍ତୁ ଦୁଇବର୍ଷ ପରେ ସେ ମଧ୍ୟ ମୃତ୍ୟୁ ମୁଖରେ ପଡ଼ିଲେ ।

ଏହିପରି ପତି, ଶ୍ୱଶୁର ଓ ପୁତ୍ର ତିନିଜଣଙ୍କୁ ହରାଇ ଅହଲ୍ୟାଙ୍କ ଦୁଃଖର ସୀମା ରହିଲା ନାହିଁ । ତାଙ୍କୁ ଦଶଦିଗ ଅନ୍ଧାର ଦିଶିଲା ।

ଏହି ସମୟରେ ତାଙ୍କର ଜଣେ କୁଟିଳ ମନ୍ତ୍ରୀ ଥିଲେ । ସେ ଅହଲ୍ୟାଙ୍କ ବିପକ୍ଷରେ ଷଡ଼ଯନ୍ତ୍ର କରିବାକୁ ଲାଗିଲେ । ତେଣେ ତାଙ୍କ ଶତ୍ରୁମାନେ ତାଙ୍କୁ ସ୍ତ୍ରୀ ବୋଲି ମନେକରି ଏବଂ ତାଙ୍କ ଦୁରବସ୍ଥା ଜାଣି ତାଙ୍କ ରାଜ୍ୟ ଛଡ଼ାଇ ନେବାକୁ ଯୋଗାଡ଼ କଲେ ।

ପୁନାର ପେଶବା ରଘୁନାଥ ରାଓ ବା ରାଘୋବା ଶତ୍ରୁମାନଙ୍କ ମଧ୍ୟରେ ପ୍ରଧାନ ଥିଲେ । ଅହଲ୍ୟାଙ୍କ ମନ୍ତ୍ରୀ ଗୋପନରେ ତାଙ୍କୁ ଉତ୍ସାହ ଦେଲେ । ରାଘୋବା ପଚାଶ ହଜାର ସୈନ୍ୟ ନେଇ ଇନ୍ଦୋର ଆକ୍ରମଣ କଲେ । ଏଥିରେ ଅହଲ୍ୟା ଡରିଲେ ନାହିଁ । ସେ ଅନେକ ସୈନ୍ୟ ସାମନ୍ତ ଓ ଯୁଦ୍ଧସରଞ୍ଜାମ ଯୋଗାଡ଼ କଲେ । ତାଙ୍କର ଜଣେ ଆତ୍ମୀୟ ତୁକୋଜୀଙ୍କୁ ସେନାପତି କରି ଯୁଦ୍ଧକୁ ପଠାଇଲେ । ରାଘୋବା ଡରିଗଲେ ଏବଂ ଯୁଦ୍ଧ ନ କରି ବାହୁଡ଼ି ଗଲେ । ଅହଲ୍ୟାଙ୍କ ଖ୍ୟାତି ବହୁତ ବଢ଼ିଗଲା । ଭିତରଆଡ଼ର ଶତ୍ରୁମାନେ ଡରିଗଲେ । ଅହଲ୍ୟା ତୁକୋଜୀଙ୍କୁ ଖୁବ ବିଶ୍ୱାସ କଲେ । ରାଜ୍ୟ ବଡ଼ ସୁରୁଖୁରୁରେ ଚାଲିଲା ।

ଅହଲ୍ୟା ରାଜ ଦରବାରରେ ବସି ରାଜକାର୍ଯ୍ୟ ବୁଝୁଥିଲେ । ତୁକୋଜୀ ସନ୍ଧି ଯୁଦ୍ଧ କଥା ବୁଝୁଥିଲେ । ପ୍ରତିଦିନ ରାଣୀ ପ୍ରଜାଙ୍କର ଦୁଃଖ ଗୁହାରି ଶୁଣିସାରି ଦରବାରରୁ ଫେରୁଥିଲେ । ତା'ପରେ ତିନି ଘଣ୍ଟା କାଳ ପୂଜା ଓ ସ୍ତବରେ କଟାଉଥିଲେ । ଉପରାନ୍ତେ ପୁଣି ରାଜ୍ୟକଥା ବୁଝି ପୂଜା ଆରାଧନା ସାରି ପ୍ରାୟ ରାତି ଅଧ ବେଳକୁ ଶୋଉଥିଲେ । ଦିନରେ ଚାରିଘଣ୍ଟା ଶୋଇଲେ ତାଙ୍କର ଯଥେଷ୍ଟ ହେଉଥିଲା । ସୂର୍ଯ୍ୟୋଦୟ ପୂର୍ବରୁ ତାଙ୍କର ସ୍ନାନାଦି ନିତ୍ୟକର୍ମ ସରି ଯାଉଥିଲା ।

ଭାରତର ଅନେକ ରାଜାଙ୍କ ସଙ୍ଗେ ଅହଲ୍ୟା ରାଜନୀତି ସମ୍ପର୍କ ରଖିଥିଲେ ଏବଂ ସେମାନଙ୍କ ନିକଟକୁ ଚିଠିପତ୍ର ଲେଖାଲେଖି କରୁଥିଲେ ।

ଅହଲ୍ୟା ରାଜ୍ୟର ଭିତରଆଡ଼େ ରାସ୍ତା, କୂପ, ମନ୍ଦିର, ପାନ୍ଥନିବାସ ପ୍ରଭୃତି ଲୋକହିତକର କାର୍ଯ୍ୟମାନ କରାଇଥିଲେ । ଆବଶ୍ୟକ ଭିନ୍ନ ସ୍ଥାନରେ ଦୁର୍ଗମାନ ତୋଳାଇଥିଲେ । ନିଜ ରାଜ୍ୟ ବାହାରେ ସେ ଭାରତର କେତେକ ସ୍ଥାନରେ ମନ୍ଦିର, ଧର୍ମଶାଳା, ରାସ୍ତା ପ୍ରଭୃତି ମଧ୍ୟ ପ୍ରସ୍ତୁତ କରିଥିଲେ ।

ଅହଲ୍ୟା ପ୍ରତିଦିନ ଦୁଃଖୀ ଦରିଦ୍ରମାନଙ୍କୁ ଅନ୍ନବସ୍ତ୍ର ଦେଉଥିଲେ । ଗ୍ରୀଷ୍ମକାଳରେ ସ୍ଥାନେ ସ୍ଥାନେ ଜଳଛତ୍ରର ବ୍ୟବସ୍ଥା କରୁଥିଲେ । ପୁଣି

ତୀର୍ଥଯାତ୍ରୀମାନଙ୍କ ସକାଶେ ସେ ନିଜ ରାଜ୍ୟରୁ ପୁରୀ ପର୍ଯ୍ୟନ୍ତ ଏକ ସଡ଼କ ନିର୍ମାଣ କରିଥିଲେ । ଇଂରେଜ ସରକାର ଏହି ରାସ୍ତାକୁ ପରେ ଆଧୁନିକରେ ନିର୍ମାଣ କରିଥିଲେ ।

ଗୟାର ଗୋଟିଏ ମନ୍ଦିରରେ ଅହଲ୍ୟାଙ୍କ ଏକ ମଲମଲ ପଥରର ମୂର୍ତ୍ତି ଅଛି ।

ମୃତ୍ୟୁ ପୂର୍ବରୁ ଅହଲ୍ୟା ତୁକୋଜୀଙ୍କୁ ନିଜ ଉତ୍ତରାଧିକାରୀ ରୂପେ ନିଯୁକ୍ତ କରିଥିଲେ ।

ଅହଲ୍ୟାଙ୍କ ପରି ରାଣୀ ପୃଥିବୀରେ ବିରଳ । ସେ ତିରିଶ ବର୍ଷ କାଳ ଶାସନ କରି ଏବଂ ହୋଲକାର ରାଜ୍ୟର ଅନେକ ଉନ୍ନତି କରି ୭୦ ବର୍ଷ ବୟସରେ ୧୭୯୫ ଖ୍ରୀଷ୍ଟାବ୍ଦର ଶ୍ରାବଣ କୃଷ୍ଣ ଚତୁର୍ଦ୍ଦଶୀ ଦିନ ପରଲୋକ ଗମନ କରିଥିଲେ । ବିନୟ, ସର୍ବସାଧାରଣଙ୍କ ଦୟା, ବିପଦରେ ସାହସ, ଧର୍ମବିଶ୍ୱାସ, ଈଶ୍ୱର ନିଷ୍ଠା ଓ ଉଜ୍ଜ୍ୱଳ ଚରିତ୍ର ଯୋଗୁଁ ସେ ଭାରତ ଇତିହାସରେ ଶ୍ରେଷ୍ଠ ରମଣୀ ରୂପେ ଚିରସ୍ମରଣୀୟ ହୋଇ ରହିବେ ।

---

( ୭ )

## ଶୁକଦେବ

ମୁକୁନ୍ଦଦେବ ଓଡ଼ିଶାର ଶେଷ ସ୍ୱାଧୀନ ରାଜା । ଯେତେବେଳେ ମୋଗଲ ସମ୍ରାଟ୍ ଆକବର ଓଡ଼ିଶା ଅଧିକାର କଲେ, ସେ ପୂର୍ବ ଗଜପତି ବଂଶର ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧାର ରାଜା ରୂପେ ଏକ ସାମନ୍ତ ବୃତ୍ତି ଦେଇଥିଲେ ।

ଓଡ଼ିଶାର ଗଜପତିମାନଙ୍କ ତଳେ ବାଙ୍କିରେ ଧଳ ବୋଲି ଏକ ରାଜବଂଶ ସାମନ୍ତ ରାଜା ଥିଲେ । ତାଙ୍କ କଟକ ଜିଲ୍ଲାରେ ଅଛି । ସେହି

ବଂଶର ପାର୍ଥ ଧଳ ଶ୍ରୀଚନ୍ଦନ ପୂର୍ବୋକ୍ତ ଖୋର୍ଦ୍ଧା ରାଜାଙ୍କ ସାମନ୍ତ ହେଲେ । ତାଙ୍କ ପଣନାତି ଧନଞ୍ଜୟ ୧୭୦୨ ରୁ ୧୭୧୭ ପର୍ଯ୍ୟନ୍ତ ବାଙ୍କିର ରାଜା ଥିଲେ ।

ଧନଞ୍ଜୟ ନିଜ ରାଜ୍ୟର ସୀମା ନେଇ ଖୋର୍ଦ୍ଧା ରାଜାଙ୍କ ସଙ୍ଗେ କଳି କରିବାରୁ ଦୁହିଙ୍କ ଭିତରେ ଯୁଦ୍ଧ ହେଲା । ଖୋର୍ଦ୍ଧା ରାଜା ତାଙ୍କୁ ବାଙ୍କି ପର୍ଯ୍ୟନ୍ତ ଖେଦି ନେଲେ । ରାସ୍ତାରେ ଧନଞ୍ଜୟ ଶୋଇଥିବା ବେଳେ ଖୋର୍ଦ୍ଧା ପାଇକମାନେ ତାଙ୍କୁ ହାଣି ଦେଲେ ।

ଖୋର୍ଦ୍ଧା ରାଜା ବାଙ୍କି ଗଡ଼ ନେବେ ବୋଲି ସୈନ୍ୟ ନେଇ ବାହାରିଲେ ।

ଧନଞ୍ଜୟଙ୍କ ରାଣୀ ଶୁକଦେଈଙ୍କୁ ଭାରି ଚିନ୍ତା ପଡ଼ିଲା । ପତି ନିହତ, ପୁଅ ଦୟାନିଧିଙ୍କୁ ବାର ବର୍ଷ ବୟସ । ଗଡ଼ରେ ସୈନ୍ୟ ଅଳ୍ପ । ଟାଣୁଆ ହୋଇ କେହି ଜଣେ ସେନାପତି ବି ନାହାନ୍ତି ।

ରାଣୀଙ୍କ ବୁଢ଼ା ମନ୍ତ୍ରୀ କହ୍ନୁ ହରପାସୁ ନିବେଦି କହିଲେ, ଶତ୍ରୁ ସଙ୍ଗେ ସନ୍ଧି କରିଯାଉ ।

ମନ୍ତ୍ରୀଙ୍କ କଥା ଶୁଣି ଶୁକଦେଈ ଅସ୍ଥିର ହେଲେ । ତାଙ୍କ ଆଖି ଦୁଇଟିରୁ ଦୁଇଟି ନିଆଁର ଶର ବାହାରିଲା । ସେ ନିଜକୁ ସମ୍ଭାଳି କହିଲେ, "ମନ୍ତ୍ରୀ, ତୁମେ ବୁଢ଼ା ଲୋକ । ବୁଢ଼ା ଲୋକର ବୁଦ୍ଧି ହଟି ଯାଇଥାଏ । ଯେଉଁ ଲୋକ ଷାରୁ ପରି ମୋର ଶୋଇଥିବା ପତିଙ୍କୁ ହତ୍ୟା କରିଛି, ମୁଁ ତାର ଶରଣ ପଶିବି, ସନ୍ଧି କରିବି ?"

ମନ୍ତ୍ରୀ ବେବର୍ତ୍ତା ପଟ୍ଟନାୟକ କହିଲେ, "ମହିମା, ଶତ୍ରୁ ସଙ୍ଗେ ଲଢ଼ିବା ଏକ୍ଷଣି କଠିନ କାମ । ବୁଢ଼ାର କଥା ଯୋଗା ହେଉ । ଶ୍ରୀମୁଖରୁ ଆଦେଶ ହେଉ, ସନ୍ଧିର ବ୍ୟବସ୍ଥା କରିବି ।"

ଶୁକଦେଈ କୌଣସିମତେ ରାଜି ହେଲେ ନାହିଁ । ସେ କହିଲେ "ମନ୍ତ୍ରୀ, ତୁମ୍ଭେ ମୋର ହୃଦୟ ବେଦନା ବୁଝିପାରୁ ନାହଁ । ମୁଁ କ୍ଷତ୍ରିୟ ଘର ଝିଅ । ମୃତ୍ୟୁକୁ ଡରେ ନାହିଁ । ଯେ ମୋତେ ବୈଧବ୍ୟ ଜ୍ୱାଳା

ଦେଇଛୁ, ତାହାର ମୁଣ୍ଡ ନେଇ ପ୍ରାଣ ଶାନ୍ତ କରିବି । ତୁମେ ବୃଦ୍ଧ, ବାତୁଳ, ଦୁର୍ବଳ । ଯାଅ, ଯାଜକ ଯୋଗାଡ଼ କର । ଆଜି ଶୁକ ଦେଈ ସେମାନଙ୍କର ସେନାପତି । ଶତ୍ରୁ ରକ୍ତରେ ପିତାଙ୍କର ତର୍ପଣ କରିବ । ତା' କରି ନ ପାରିଲେ, ଯୁଦ୍ଧରେ ଜୀବନ ଦେବ ।"



ଶୁକ ଦେଈ ପୁରୁଷ ବେଶ ଧରି ରଣଚଣ୍ଡୀ ପରି ଯୁଦ୍ଧାର୍ଥ ଅଗ୍ରସର ହେଲେ । ବୃଦ୍ଧ ମନ୍ତ୍ରୀ ଯାଜକମାନଙ୍କୁ ସଂଗ୍ରହ କରି ଦେଲେ । ରାଣୀଙ୍କ ଉତ୍ସାହ ବାକ୍ୟ ଓ ବୀରଦର୍ପରେ ସୈନ୍ୟମାନେ ମାତି ଉଠିଲେ ।

ଶୁକ ଦେଈ କେତେକ ସୈନିକ ନେଇ ଯୁଦ୍ଧ ଭୂମିରେ ଖୋର୍ଦ୍ଧା ରାଜାଙ୍କୁ ଖୋଜିବାକୁ ଲାଗିଲେ । ତାଙ୍କ ସୈନ୍ୟମାନେ 'ଜୟ ମା ଚଣ୍ଡିକା' ଧ୍ୱନି ଶୁଣି ରାଣୀଙ୍କ ପଛେ ପଛେ ଧାଇଁଲେ । ଠିକ୍ ଏତିକିବେଳେ ବଡ଼ମ୍ବାର ସୈନ୍ୟ ଆସି ରାଣୀଙ୍କୁ ସାହାଯ୍ୟ କଲେ ।

ଖୋର୍ଦ୍ଧା ସେନା ପଛକୁ ହଟିଲେ । ସେନାପତି ନିହତ ହେଲେ । ରାଜା ପଳାଇ ପାରିଲେ ନାହିଁ, ରାଣୀଙ୍କ ହାତରେ ବନ୍ଦୀ ହେଲେ । ବାଙ୍କି ସେନା ଆନନ୍ଦରେ "ଜୟ, ବୀରରାଣୀ ଶୁକ ଦେଈଙ୍କର ଜୟ" ବୋଲି ଆକାଶ କମ୍ପାଇ ଦେଲେ ।

ଶୁକ ଦେଈ ପିତା ହତ୍ୟାର ପ୍ରତିଶୋଧ ନେବେ ବୋଲି ଏତେ କାମ କଲେ, କିନ୍ତୁ ଖୋର୍ଦ୍ଧା ରାଜାଙ୍କୁ ବନ୍ଦୀ ବେଶରେ ଦେଖି ତାଙ୍କ ନାରୀ-ହୃଦୟରେ ଦୟା ଉପୁଜିଗଲା । ସେ ବୁଝି ପାରିଲେ, ସେ ଯଥେଷ୍ଟ ପ୍ରତିଶୋଧ ନେଇଛନ୍ତି । ଆଉ ସେତିକି ଭୁଲ କାମ କରିବେ ନାହିଁ । ଶୁକ ଦେଈ ଖୋର୍ଦ୍ଧା ରାଜାଙ୍କୁ କହିଲେ, "ରାଜା ତୁମ୍ଭେ ମୋର ହୃଦୟର ବେଦନା ବୁଝିବ କିପରି ? ତୁମ୍ଭେ ଯେ ପୁରୁଷ ! ମୋତେ କି ଅବସ୍ଥାରେ ପକାଇଛ,

ତାହା ଜାଣିବା, ତୁମ୍ଭ ଶକ୍ତିର ବହିର୍ଭୂତ । ତୁମ୍ଭେ ଆଜ ମୋ ହାତରେ ବନ୍ଦୀ । କିନ୍ତୁ ତୁମ୍ଭେ ଯେଉଁ ଭୁଲ କରିଛ ମୁଁ ଆଜି ସେ ଭୁଲ କରିବି ନାହିଁ । ମୋର ଜଣେ ଭଉଣୀଙ୍କୁ ମୋପରି ବୈଧବ୍ୟ ଜ୍ୱାଳାରେ ସନ୍ତାଇବି ନାହିଁ । ଯାଅ, ଆଜ ତୁମ୍ଭେ ମୁକ୍ତ !"

ଖୋର୍ଦ୍ଧା ରାଜା ବଡ଼ ଲଜ୍ଜିତ ହେଲେ । ତାଙ୍କ ସଙ୍ଗେ ବନ୍ଧୁତା କଲେ । ତାଙ୍କୁ କୁଶପଡ଼ା ପ୍ରଗଣା ଦାନ କଲେ ।

ବାଳକ ଦୟାନିଧି ବାଙ୍କିର ରାଜା ହେଲେ । ରାଣୀ ତାଙ୍କ ପକ୍ଷରୁ ସୁନ୍ଦର ଭାବରେ ରାଜକାର୍ଯ୍ୟ ବୁଝା ସୁଝା କଲେ । ପତିଭକ୍ତି, ସାରସାହସ, ପ୍ରଜାପାଳନ, ଶାସନକୌଶଳ କୌଣସି ଗୁଣରେ ଶୁକ ଦେଖି ଊଣା ନ ଥିଲେ । ତାଙ୍କ ପରି ରାଣୀଙ୍କୁ ପାଇ ଓଡ଼ିଶାର ଗୌରବ ବିଶେଷ ରୂପେ ବଢ଼ି ଯାଇଛି ।

---

( ୮ )

## କୃଷ୍ଣା କୁମାରୀ

୧୭୭୮ ଖ୍ରୀଷ୍ଟାବ୍ଦରେ ଚିତୋରରେ ଭୀମସିଂହ ବୋଲି ଜଣେ ରାଜା ଥିଲେ । ତାଙ୍କର କୃଷ୍ଣାକୁମାରୀ ନାମରେ ମେନକା ପରି ସୁନ୍ଦରୀ ଏକ କନ୍ୟା ଥିଲା ।

ରାଣା ଭୀମସିଂହ କୃଷ୍ଣାକୁମାରୀଙ୍କୁ ଯୋଧପୁର ରାଜାଙ୍କ ସଙ୍ଗେ ବିଭା କରାଇବେ ବୋଲି ଠିକ୍ କରିଥିଲେ । କିନ୍ତୁ ସେ ରାଜା ବିଭା ପୂର୍ବରୁ ମରି ଯିବାରୁ ନିଜ କନ୍ୟାକୁ ଜୟପୁର ରାଜାଙ୍କୁ ଦେବେ ବୋଲି ରାଣା ନିଶ୍ଚୟ କଲେ ।

ଏତେବେଳେ ଯୋଧପୁରର ପରବର୍ତ୍ତୀ ରାଜା ମାନସିଂହ କହିଲେ, "ଯେ ଯୋଧପୁରର ରାଜା ହେବ, ସେ କୃଷ୍ଣାକୁମାରୀଙ୍କୁ ବିଭା ହେବ । ରାଣା ଯୋଧପୁର ରାଜାଙ୍କୁ ଝିଅ ଦେବେ ବୋଲି ପ୍ରତିଶ୍ରୁତ ହୋଇଛନ୍ତି ।"

ରଣା କୃଷ୍ଣାକୁମାରୀଙ୍କ ବିବାହ ପ୍ରସ୍ତାବ ସ୍ଥଗିତ ରଖିଲେ । ଏଥିରେ ଜୟପୁରର ରାଜା ଜଗତ୍‌ସିଂହ କ୍ରୁଦ୍ଧ ହେଲେ । ସେ ସୈନ୍ୟ ସଂଗ୍ରହ କରି ଚିତୋର ଆକ୍ରମଣ କଲେ ।

ସେଥିରେ ରାଗିଯାଇ ମାନସିଂହ ମଧ୍ୟ ଜଗତସିଂହଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଅଗ୍ରସର ହେଲେ । ଜଣାପଡ଼ିଲା, ରାଜପୁତନାରେ ଘୋର ଯୁଦ୍ଧ ବାଜିବ ।

ଏହି ସମୟରେ ଅମୀର ଖାଁ ବୋଲି ଜଣେ ପିଣ୍ଡାରୀ ସର୍ଦ୍ଦାର ଥିଲେ । ତାଙ୍କ ପେଶା ଥିଲା, ଲୁଟିଆନ୍ତେ ଦେଶ ଲୁଣ୍ଠନ କରିବା । କୌଣସି ପ୍ରକାରେ ଯୁଦ୍ଧ ହେଲେ, ସେ ଗୋଟିଏ ପକ୍ଷକୁ ସାହାଯ୍ୟ କରିବାର ଛଳନା କରି ପ୍ରଜାଙ୍କ ଧନ ଲୁଣ୍ଠନରେ ଲାଗନ୍ତି, ଧନ ପାଇଁ ଲୋକଙ୍କ ଜୀବନ ନିଅନ୍ତି, ଗାଁଗଣ୍ଡା ଘରଦ୍ୱାର ପୋଡ଼ି ଜଳାଇ ଶେଷ କରନ୍ତି ।

ଅମୀର ଖାଁ ମାନସିଂହଙ୍କୁ ସାହାଯ୍ୟ କଲେ । ସେ କହିଲେ, "ରଣା କୃଷ୍ଣାକୁମାରୀଙ୍କୁ ମାନସିଂହ ହାତରେ ସମର୍ପଣ କରନ୍ତୁ । ନ ହେଲେ, ମେ ମିବାର ଧ୍ୱଂସ କରିବେ ।"

ଅମୀର ଖାଁ ଜଣେ ଦୁର୍ବୃତ୍ତ । ସେ ମିବାରକୁ ଶ୍ମଶାନ କରିଦେବେ । ପ୍ରଜାକୁଳକୁ ଉଚ୍ଛନ୍ନ କରିଦେବେ । ଭୀମସିଂହ ବଡ଼ ବିପଦରେ ପଡ଼ିଲେ । କ'ଣ କରିବେ, କିଛି ଠିକ୍ କରିପାରିଲେ ନାହିଁ ।

ସେଥି ସକାଶେ ରାଣା ସର୍ଦ୍ଦାର ଓ ଆତ୍ମୀୟମାନଙ୍କୁ ନେଇ ଏକ ସଭା କଲେ । ସଭାରେ ଉଦ୍ଧାରର ଉପାୟ ଚିନ୍ତା କରାଗଲା । ଶେଷରେ ସ୍ଥିର ହେଲା, କୃଷ୍ଣା ହିଁ ଏ କଳିର କାରଣ । ସେ ନ ଥିଲେ ଆଜି କଳି ହେବ କାହା ଲାଗି ? ତାଙ୍କୁ ବଧ କରିବାକୁ ହେବ ।

କିନ୍ତୁ କୃଷ୍ଣାଙ୍କୁ ବଧ କରାଯାଏ କିପରି ?

ସେଥି ସକାଶେ ଦୌଲତ ସିଂହ ନାମକ ଜଣେ ସର୍ଦ୍ଦାରଙ୍କୁ କୁହାଗଲା । ଦୌଲତ ଉତ୍ତର କଲେ, "ମହାରାଜ, ଏପରି କଷ୍ଟର କଥା ଆପଣଙ୍କ ମୁହଁରୁ ବାହାରୁଛି କିପରି ? ନିତାନ୍ତ ପିଶାଚ, ବର୍ବର ନ ହେଲେ, ଝିଅଙ୍କ ରକ୍ତପାତ କେହିହେ କରିପାରିବ ନାହିଁ । ଏପରି ନିର୍ମମ ପାଶବିକ କାର୍ଯ୍ୟ କରି ଯେବେ ରାଜଭକ୍ତି ଦେଖାଇବାକୁ ହୁଏ, ତେବେ ମୋର ଜୀବନକୁ ଧିକ୍ ଏବଂ ସେହି ରାଜଭକ୍ତିକୁ ଧିକ୍ ।"

ରାଜାଙ୍କ ଆଦେଶରେ ଯୌମ୍ୟନ ଦାସ ନାମରେ ଆଉ ଜଣେ ବ୍ୟକ୍ତି କୃଷ୍ଣାଙ୍କ ବଧ ନିମନ୍ତେ ଅଗ୍ରସର ହେଲେ । କିନ୍ତୁ କୃଷ୍ଣାଙ୍କ ଲବଣୀପିତୁଳା ରୂପ ଯେତେବେଳେ ତାଙ୍କ ଆଖିରେ ପଡ଼ିଗଲା, ତାଙ୍କ ହାତରୁ ଅସି ଖସି ପଡ଼ିଲା । ସେ ବିଫଳ ହୋଇ ଫେରି ଆସିଲେ ।

ଯୌମ୍ୟନ ଦାସଙ୍କ ସେହି ଚେଷ୍ଟାରୁ ଅନ୍ତଃପୁରର ସମସ୍ତେ କୃଷ୍ଣାଙ୍କୁ ବଧ କରିବାକୁ ଆଦେଶ ହୋଇଛି ବୋଲି ଜାଣିପାରିଲେ । ଖବରଟି ବିଜୁଳି ପରି ଚାରିଆଡ଼େ ଖେଳିଗଲା । ଯେ ଶୁଣିଲା, ସେ କାନରେ ହାତ ଦେଲା ।

ରାଣୀ ଯେତେବେଳେ ଶୋକରେ ବ୍ୟାକୁଳ ଓ ମୂର୍ଚ୍ଛିତା ହୋଇ ଛାତିପାଟିରେ ‘ହା କୃଷ୍ଣା’ ‘ହା କୃଷ୍ଣା’ ବୋଲି ବିଳାପ କଲେ, ସେତେବେଳେ କୃଷ୍ଣାକୁମାରୀ ମଧ୍ୟ ବିଳାପର କାରଣ ବୁଝିପାରିଲେ ।

କୃଷ୍ଣାକୁମାରୀ କଥାଟା ଯେତେବେଳେ ଜାଣିଲେ, ସେ ଟିକିଏ ବି ବିଚଳିତ ହେଲେ ନାହିଁ । ସେ ବୁଝିଲେ ପିତା ସ୍ୱଦେଶର ଅବସ୍ଥା ଦେଖି ସେହି ଆଦେଶ ଦେଇଛନ୍ତି । ରାଜ୍ୟ, ପ୍ରଜା ଅପେକ୍ଷା ଗୋଟିଏ କନ୍ୟାର ଜୀବନର ମୂଲ୍ୟ ଅଧିକ ନୁହେଁ । ରାଜ୍ୟକୁ ରକ୍ଷା କରିବା ନିମନ୍ତେ, ଲକ୍ଷ ଲକ୍ଷ ପ୍ରଜାଙ୍କର ରକ୍ତପାତ ବନ୍ଦ କରିବା ନିମନ୍ତେ ପିତା ଯେଉଁ ଆଦେଶ ଦେଇଛନ୍ତି, ତାହା ବିବେକୀର କାର୍ଯ୍ୟ କରିଛନ୍ତି ।

କୃଷ୍ଣା ମାତାଙ୍କ ନିକଟକୁ ଯାଇ କହିଲେ, “ମାଆ, କାନ୍ଦୁଛ କାହିଁକି ? ମନୁଷ୍ୟ ଜନ୍ମହେଲା ମାତ୍ରେ ଦିନେ ଅବଶ୍ୟ ମରିବ । ଆଉ ଯଦି ତା’ର ମରିବାରେ ଶତସହସ୍ର ଲୋକଙ୍କର ଉପକାର ହୁଏ, ଧନଜୀବନ ରକ୍ଷା ହୁଏ, ସେପରି ମରଣ ଶ୍ଳାଘ୍ୟ । ତୁମେ କ୍ଷତ୍ରିୟ ଝିଅ, ତୁମ ଗର୍ଭରେ ମୋର ଜନ୍ମ । ଆମେ ପୁଣି ମରିବାକୁ ଡରିବା ! ରାଜପୁତ ଘର ଝିଅ ଜନ୍ମିବା ମାତ୍ରେ ଅପମୃତ୍ୟୁର ହାତରେ ପ୍ରାଣ ଦେଇ ସାରିଥାଏ । ଏବଂ, ଯୁଦ୍ଧରେ ପ୍ରାଣ ଦେବ, ନ ହେଲେ ନିଆଁରେ ପଶି ମରିବ । ମୁଁ ତ କେବେଠୁଁ ମରି ସାରିଥାନ୍ତି, କିନ୍ତୁ ପିତାଙ୍କ ଯୋଗୁଁ ବଞ୍ଚିଛି । ତୁମେ ସେକଥା ବୁଝିନାହିଁ ? ତୁମେ କ’ଣ ପଦ୍ମିନୀ, ସଂଯୁକ୍ତା ଆଦି ଏତେ ରାଜପୁତ ରମଣୀଙ୍କ ପରିଣତି ଭୁଲିଗଲ ? କାନ୍ଦିବା କ’ଣ ତୁମକୁ ଶୋଭା ପାଏ ମାଆ ?

"ମାଆ ମୋର ଲାଗି କେତେ ନିରପରାଧ ଲୋକ ମଲେଣି । ମିବାର ଛାରଖାର ହେବାକୁ ବସିଛି ! ଶତସହସ୍ରଙ୍କ ରକ୍ତରେ ମିବାର ଭୂମି ପ୍ଲାବିତ ହେବ ! କନ୍ୟା ସ୍ନେହରେ କ'ଣ ରାଣା ନିଜ କର୍ତ୍ତବ୍ୟରେ ତ୍ରୁଟି କରିବେ ? ସେଟା କ'ଣ ରାଣାଙ୍କ ପକ୍ଷରେ ସୁନ୍ଦର ହେବ ? ଧୈର୍ଯ୍ୟ ଧର ମାଆ, ରାଜପୁତ ରମଣୀର କର୍ତ୍ତବ୍ୟ ମନେ କର ।"

କୃଷ୍ଣାକୁମାରୀ ପ୍ରଜାର ହିତ ନିମନ୍ତେ, ସୁଶାନ୍ତି ନିମନ୍ତେ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଅଛନ୍ତି, ଆନନ୍ଦିତ ଅଛନ୍ତି । କର୍ତ୍ତବ୍ୟ କରିବାକୁ ତାଙ୍କର ଟିକେ ହେଲେ ଦ୍ୱିଧା ବା କାତରତା ନାହିଁ ।

ରାଜକୁମାରୀଙ୍କୁ ହତ୍ୟା କରିବା ନିମନ୍ତେ କେହି ପୁରୁଷ ରାଜି ହେଲେ ନାହିଁ । ନିରୁପାୟ ହୋଇ ରାଣା ଶେଷରେ ଗୋଟିଏ ସ୍ତ୍ରୀ ହାତରେ ତାଙ୍କୁ ବିଷପାନ କରିବାକୁ ଦେଲେ ।

ବିଷପାତ୍ର ହାତକୁ ନେଇ କୃଷ୍ଣାକୁମାରୀଙ୍କ ମୁଖମଣ୍ଡଳରେ କି ମନ ମଧ୍ୟରେ ଟିକିଏ ହେଲେ ବିକାର ଦେଖାଗଲା ନାହିଁ । ତାଙ୍କ ହାତଗୋଡ଼ ଟିକିଏ ହେଲେ ଥରିଲା କି ହଲଚଲ ହେଲା ନାହିଁ । ରାଜ୍ୟର, ପ୍ରଜାଙ୍କର ମଙ୍ଗଳ କାମନା କରି ହସି ହସି ବିଷପାନ କଲେ । ସେହି ବିଷ ସୁଦ୍ଧା ତାଙ୍କ ପ୍ରାଣ ନେବାକୁ ସାହାସ କଲା ନାହିଁ । ସେ ଏହିପରି ତିନିଥର ବିଷପାନ କଲେ ।

ଶେଷରେ ଏକ ହଳାହଳ କାଳକୂଟ ପ୍ରସ୍ତୁତ ହେଲା । ରାଜକୁମାରୀ ତାହା ଆନନ୍ଦରେ ପାନ କରି ବୁଝିପାରିଲେ, ତାଙ୍କୁ ଆଉ ଥରେ ବିଷପାନ କରିବାକୁ ହେବ ନାହିଁ । ପିତାଙ୍କୁ ସଙ୍କଟରୁ ଉଦ୍ଧାର କରିବାକୁ ସେ ଅନନ୍ତ ନିଦ୍ରାରେ ଶୋଇଲେ, ଯେଉଁ ନିଦ୍ରାରୁ ଆଉ ଜାଗରଣ ନାହିଁ ।

ପ୍ରଜାଙ୍କର ରକ୍ତପାତ ନିରୋଧ ନିମନ୍ତେ, ରାଜ୍ୟର ଧନଜୀବନ ରକ୍ଷା ନିମନ୍ତେ, ଜନ୍ମଭୂମିର କଲ୍ୟାଣ ନିମନ୍ତେ, ରାଜପୁତ ଯୁବତୀ କୃଷ୍ଣାକୁମାରୀ ଯେଉଁ ଆଦର୍ଶ ପୃଥିବୀ ସମ୍ମୁଖରେ ଥୋଇଗଲେ, ତାହାର ଅନୁସରଣ ପୃଥିବୀରେ ଏ ପର୍ଯ୍ୟନ୍ତ କେହି କରିପାରି ନାହାନ୍ତି ।



( ୪ )

# ଲକ୍ଷ୍ମୀବାଈ

ଉତ୍ତର ପ୍ରଦେଶରେ ଝାନ୍ସି ରାଜ୍ୟ । ଆଜକୁ ଶହେ ବର୍ଷ ପୂର୍ବେ ଗଙ୍ଗାଧର ରାଓ ବୋଲି ଜଣେ ମରହଟ୍ଟା ଝାନ୍ସିର ରାଜା ଥିଲେ । ଝାନ୍ସି ଯମୁନା ନଦୀରୁ ଅଳ୍ପ ବାଟରେ ଯମୁନାର ଦକ୍ଷିଣ ଭାଗରେ ଅଛି ।

ଯେତେବେଳେ ଗଙ୍ଗାଧର ରାଓ ଝାନ୍ସିର ରାଜା ଥିଲେ, ପୁନାର ପେଶବାଙ୍କ ମୋରୋପନ୍ତ ନାମରେ ଏକ ବଡ଼ କର୍ମଚାରୀ ଥିଲେ । ମୋରୋପନ୍ତଙ୍କର ମନୁବାଈ ବୋଲି ଏକ ସୁନ୍ଦରୀ ଓ ବୁଦ୍ଧିମତୀ କନ୍ୟା ଥିଲା ।

ମନୁବାଈ ବଡ଼ ହେଲେ । ୧୮୪୮ରେ ମୋରୋପନ୍ତ ତାଙ୍କୁ ଝାନ୍ସିର ରାଜା ଗଙ୍ଗାଧର ରାଓଙ୍କ ସଙ୍ଗେ ବିବାହ କରାଇ ଦେଲେ । ତେଣିକି ମନୁଙ୍କ ନାମ ହେଲା ଲକ୍ଷ୍ମୀବାଈ ।

ବିବାହର ଦୁଇ ବର୍ଷ ପରେ ଲକ୍ଷ୍ମୀବାଈଙ୍କର ଏକ ପୁତ୍ର ହେଲା । ପୁତ୍ରଟି ମରିଗଲା । ତାଙ୍କୁ ଝୁରି ଝୁରି ରାଜା ଗଙ୍ଗାଧର ରାଓ ମଧ୍ୟ ଅଳ୍ପଦିନ ପରେ ମରିଗଲେ । ସେ ମରିବା ଆଗରୁ ଜଣକୁ ପୋଷ୍ୟ ପୁତ୍ର କରିଥିଲେ ।

୧୮୫୪ରେ ଭାରତର ଗଭର୍ଣ୍ଣର ଜେନେରାଲ ଲର୍ଡ ଡେଲହାଉସି ଗଙ୍ଗାଧରଙ୍କ ପୋଷ୍ୟପୁତ୍ରଙ୍କୁ ଝାନ୍ସିର ରାଜା ବୋଲି ସ୍ୱୀକାର କଲେ ନାହିଁ । ସେ କହିଲେ, ପୋଷ୍ୟ ପୁତ୍ର ରାଜ୍ୟ ପାଇ ପାରିବ ନାହିଁ । ସେ ଲକ୍ଷ୍ମୀବାଈଙ୍କୁ ମଧ୍ୟ ରାଜ୍ୟ ଦେଲେ ନାହିଁ । ଝାନ୍ସି ଇଂରେଜ ରାଜ୍ୟରେ ମିଶିଗଲା । ଇଂରେଜ କର୍ମଚାରୀ ଉକ୍ତ ଝାନସି ଶାସନ କଲେ । ରାଣୀ ମାସକୁ ପାଞ୍ଚ ହଜାର ଟଙ୍କା ବୃତ୍ତି ପାଇଲେ ।

ଗଙ୍ଗାଧର ମରିଯିବା ପରେ ଲକ୍ଷ୍ମୀବାଈ ପୋଷ୍ୟ ପୁତ୍ରଙ୍କୁ ରାଜା କରି ତା ପକ୍ଷରୁ ରାଜ୍ୟ ଚଳାଇଲେ । ଡେଲହାଉସି ଯେତେବେଳେ ତାଙ୍କ ହାତରୁ ଶାସନ କ୍ଷମତା ଛଡ଼ାଇ ନେଲେ ଏବଂ ଝାନ୍ସି ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନକୁ ଗଲା ବୋଲି ଘୋଷଣା କଲେ, ଲକ୍ଷ୍ମୀବାଈ ପ୍ରତିବାଦ କଲେ । ତାଙ୍କର ସେତେ ପ୍ରତିବାଦ, ଡେଲହାଉସି କିଛି ଶୁଣିଲେ ନାହିଁ ।

ଲକ୍ଷ୍ମୀବାଈ ବିରକ୍ତ ହେଲେ । ସେ ବ୍ୟାକୁଳ ହୋଇ ଇଂରେଜମାନଙ୍କୁ ଝାନ୍ସିରୁ ଛାଡ଼ି ଦେବେ ବୋଲି ନାନା ଚେଷ୍ଟାରେ ରହିଲେ । ସେ ସୈନିକ ସଂଖ୍ୟା ବଢ଼ାଇଲେ । କିନ୍ତୁ ସେଥିପାଇଁ ଟଙ୍କା ଦରକାର । ଡେଲହାଉସି ତ ତାଙ୍କ ହାତରୁ ରାଜ୍ୟ ନେଇଗଲେ । ସେ ଟଙ୍କା ପାଆନ୍ତି କେଉଁଠୁ ? ତାଙ୍କୁ ଦିଆ ଯାଉଥିବା ମାସିକ ବୃତ୍ତି ପାଞ୍ଚ ହଜାର ଟଙ୍କାରେ ସେ କରନ୍ତି କ'ଣ । ସେ ବିଶେଷ ଅର୍ଥାଭାବରେ ପଡ଼ିଲେ ।

ଲକ୍ଷ୍ମୀବାଈ ଅତି ବୁଦ୍ଧିମତୀ ଥିଲେ । ସେ ଯେ ଇଂରେଜ ସରକାରଙ୍କ ବିପକ୍ଷରେ ଅଛନ୍ତି, ସେମାନଙ୍କୁ ଝାନ୍ସିରୁ ଛାଡ଼ି ଦେବାକୁ ଚାହୁଁଛନ୍ତି, ସେ କଥା କାହାରିକୁ କିଛି ଜଣାଇ ଦେଲେ ନାହିଁ । ସେ ଇଂରେଜମାନଙ୍କ ପ୍ରତି କପଟ ବନ୍ଧୁତା ଦେଖାଇଲେ । ଗୋରା ସ୍ତ୍ରୀମାନଙ୍କ ସଙ୍ଗେ ସଦ୍‌ଭାବ ରଖିଲେ ।

ଲକ୍ଷ୍ମୀବାଈ ବୁଝିଲେ, ଇଂରେଜମାନଙ୍କ ଅତ୍ୟାଚାରରେ ଝାନ୍ସିର ପ୍ରଜାମାନେ ଉତ୍ତ୍ୟକ୍ତ ହେଲେ, ତାଙ୍କୁ ସୁବିଧା ହେବ । ରାଣୀ ଗୋରା ଶାସକମାନଙ୍କ ସଙ୍ଗେ କପଟ ବନ୍ଧୁତା ରଖିଲେ, ଶାସକମାନେ ନିର୍ଭୟରେ ଅତ୍ୟାଚାର କରିବେ ।

ଇଂରେଜମାନେ ଝାନ୍ସି ଯେତେବେଳେ ହାତକୁ ନେଲେ, ରାଜ୍ୟରେ ନୂଆ ନୂଆ କଥା ହେଲା । ସେମାନେ ପ୍ରଜାମାନଙ୍କ, ହିନ୍ଦୁମାନଙ୍କ ମନର ଧର୍ମଚିନ୍ତା କଥା ବୁଝି ପାରିଲେ ନାହିଁ । ରାଜ୍ୟରେ ଗୋବଧ ହେଲା, ସବୁଆଡ଼େ କଂସାଇଖାନା ବସିଲା । ହିନ୍ଦୁମାନଙ୍କୁ ତାହା ବଡ଼ ଅପ୍ରୀତିକର ହେଲା । ସେମାନେ ବ୍ୟତିବ୍ୟସ୍ତ ହେଲେ ।

ଲକ୍ଷ୍ମୀବାଈ ନିଜର ସୈନ୍ୟ ରଖିଲେ । ସେମାନଙ୍କୁ ଦରମା ଦେବାକୁ ଋଣ କଲେ । ସେ ପ୍ରତିଦିନ ଦୁଃଖୀ, ଭିକାରି, ବ୍ରାହ୍ମଣ-ସାଧୁମାନଙ୍କୁ ଦାନ କରୁଥିଲେ । ତାହା ମଧ୍ୟ କରି ପାରିଲେ ନାହିଁ । ଇଂରେଜମାନେ ଦେଉଥିବା ବୃତ୍ତିରୁ ଏସବୁ କାମ ତୁଲାଇ ପାରିଲେ ନାହିଁ । ଦିନକୁ ଦିନ ତାଙ୍କର ଋଣ ଭାର ବଢ଼ିଲା ।

ଇଂରେଜମାନେ ଭାରତର ସ୍ୱାଧୀନତା ଅନେକ ରାଜ୍ୟ ନେଲେ । ଯେଉଁ ରାଜା ଅପୁତ୍ରିକ ହୋଇ ମଲେ, ସେମାନଙ୍କ ରାଜ୍ୟ, ବୃତ୍ତି, ପଦବୀ ଛଡ଼ାଇ ନେଲେ । ରେଳ ଜାହାଜ ଚଳାଇଲେ । ସୈନିକମାନଙ୍କୁ ରେଳ ଜାହାଜରେ ଅନ୍ୟ ସ୍ଥାନକୁ ସ୍ୱଇଚ୍ଛାରେ ଯିବାକୁ ବାଧ୍ୟ କଲେ । ସେମାନେ ରେଳ ଜାହାଜରେ ଯିବାବେଳେ ଖିଆପିଆ କରି ପାରୁ ନ ଥିଲେ । ସେଥିରେ ସେମାନଙ୍କର ଜାତି ଯିବା ଡର ରହିଲା । ସେମାନେ ରେଳ ଜାହାଜରେ ଯିବାକୁ ରାଜି ହେଲେ ନାହିଁ ।

ଇଂରେଜମାନେ ଏହିବେଳେ ଗୋଟିଏ ନୂଆ ପ୍ରକାର ବନ୍ଧୁକ ବାହାର କଲେ । ସେଥିର ଟୋଟାରେ ଗୋରୁ ଓ ଘୁଷୁରି ଚର୍ବି ଲାଗିଥିଲା । ତାକୁ ଦାନ୍ତରେ କାଟିବାକୁ ପଡ଼ୁଥିଲା । ସୈନିକମାନେ ତାହା ବ୍ୟବହାର କରିବାକୁ ନାରାଜ ହେଲେ ।

ଯେଉଁ ସୈନିକମାନେ ରେଳ ଜାହାଜରେ ଯିବାକୁ ଏବଂ ନୂଆ ପ୍ରକାର ରାଇଫଲ୍ ବନ୍ଧୁକ ଚଳାଇବାକୁ ନାରାଜ ହେଲେ, ଇଂରେଜ ସରକାର ସେମାନଙ୍କୁ ଚାକିରିରୁ ବାହାର କରି ଦେଲେ । ରାଜ୍ୟର ସ୍ୱାଧୀନତା ଲୋପ ହେବାରୁ ସମସ୍ତେ ବିରକ୍ତ ହେଲେ । ଏଥିରେ ଲୋକେ ବିଦ୍ରୋହ କରିବାକୁ ପ୍ରସ୍ତୁତ ହେଲେ । ସୈନିକମାନେ ଯୁଦ୍ଧ କରିବେ ବୋଲି ବାହାରିଲେ ।

ଯେଉଁ ରାଜା, ରାଜପୁତ୍ର ରାଜ୍ୟବୃତ୍ତି ପଦବୀ ହରାଇଥିଲେ, ସମସ୍ତେ ସୈନିକମାନଙ୍କୁ ମତାଇ ସେମାନଙ୍କର ନେତା ହେଲେ । ଭାରତର ସ୍ୱାଧୀନତା ଆଡ଼ର ଲୋକେ ଯୁଦ୍ଧ କରି ଇଂରେଜମାନଙ୍କୁ ଭାରତରୁ ତଡ଼ିଦେବେ ବୋଲି ତିଆରି ହୋଇଗଲେ ।

୧୮୫୭ରେ ଯୁଦ୍ଧ ଆରମ୍ଭ ହୋଇଗଲା । ରାଜା, ରାଜପୁତ୍ର, ସୈନିକ, ପ୍ରଜା ସମସ୍ତେ ଯୁଦ୍ଧରେ ଯୋଗଦେଲେ । ଇଂରେଜମାନଙ୍କୁ ଭାରତରୁ ତଡ଼ି ଦେଇ ଭାରତକୁ ସ୍ୱାଧୀନ କରିବା ନିମନ୍ତେ ଗୋଟିଏ ବଡ଼ ଆନ୍ଦୋଳନ ଚାଲିଲା । ଇଂରେଜମାନଙ୍କ ଅବସ୍ଥା ଭୀଷଣ ଟଳମଳ ହୋଇଗଲା ।

ଲକ୍ଷ୍ମୀବାଈଙ୍କୁ ଏକ ବଡ଼ ସୁଯୋଗ ମିଳିଗଲା । ସେ ଝାନ୍ସିର ନେତ୍ରୀ ହେଲେ । ଝାନ୍ସିକୁ ସ୍ୱାଧୀନ ବୋଲି ଘୋଷଣା କଲେ । ପ୍ରଜାମାନେ ତାଙ୍କୁ ହୃଦୟରୁ ସଚ୍ଚା ଅଭିବାଦନ କଲେ । ଲୋକେ ଓ ସୈନିକମାନେ ଶହଶହ ସଂଖ୍ୟାରେ ତାଙ୍କ ସୈନିକ ଦଳରେ ଯୋଗ ଦେଲେ ।

ମୃତ୍ୟୁର ପେଶବା ଦ୍ୱିତୀୟ ବାଜୀରାଓ ଏହିବେଳେ ନାନା ସାହେବଙ୍କୁ ପୋଷ୍ୟପୁତ୍ର କରିଥିଲେ । ଇଂରେଜମାନେ ନାନା ସାହେବଙ୍କୁ ମାନ୍ୟଗଣ୍ୟ ଦେଲେ ନାହିଁ । ନାନା ସାହେବ ବୃତ୍ତି ପାଇ ବିଥୁର ନଗରରେ ବାସ କରୁଥିଲେ । ତାନ୍ତିଆ ଟୋପି ନାମରେ ଜଣେ ମରହଟ୍ଟା ବ୍ରାହ୍ମଣ ନାନା ସାହେବଙ୍କର ପ୍ରଧାନ ପୃଷ୍ଠପୋଷକ ଥିଲେ । ତାନ୍ତିଆ ଅତି ବୁଦ୍ଧିମାନ ଓ ଚତୁର ଥିଲେ । ସେ ଗ୍ୱାଲିୟରର କୋଡ଼ିଏ ହଜାର ସୈନିକ ସଂଗ୍ରହ କରି ସେମାନଙ୍କର ନେତା ହୋଇଥିଲେ । ସେମାନଙ୍କୁ ହାତ କରି ସେ ନାନା ସାହେବଙ୍କୁ ସାହାଯ୍ୟ କଲେ ଏବଂ ଭୀଷଣ ଯୁଦ୍ଧର ଉଦ୍ୟୋଗ କଲେ । ତାଙ୍କ ଚେଷ୍ଟାରେ ଇଂରେଜମାନେ କାନପୁରରୁ ଛଡ଼ା ଖାଇଲେ । କଲିନ କେମ୍ବେଲ୍ ବୋଲି ଜଣେ ଇଂରେଜ ସେନାପତି ତାଙ୍କୁ ପଛକୁ ଯୁଦ୍ଧରେ ହଟାଇ ଦେବାରୁ ତାନ୍ତିଆ ଟୋପି ନିଜ ସୈନିକମାନଙ୍କୁ ନେଇ ଝାନ୍ସିର ରାଣୀ ଲକ୍ଷ୍ମୀବାଈଙ୍କ ସଙ୍ଗେ ଯୋଗ ଦେଲେ । ଲକ୍ଷ୍ମୀବାଈ ସୈନ୍ୟ ଓ ତାନ୍ତିଆଙ୍କ ସୈନ୍ୟ ଏକତ୍ର ମିଶିଯିବାରୁ ଏବଂ ତାନ୍ତିଆଙ୍କ ସାହାଯ୍ୟ ପାଇବାରୁ ଲକ୍ଷ୍ମୀବାଈଙ୍କ ବୁଦ୍ଧିବଳ ବଢ଼ିଗଲା । ସେ ଏକ ପ୍ରଚଣ୍ଡ ଶକ୍ତି ହୋଇ ଠିଆ ହେଲେ । ଜଣାଗଲା, ଝାନ୍ସିରେ ଇଂରେଜମାନଙ୍କର ସମସ୍ତ ଆଶାଭରସା ଲୋପ ପାଇଛି । ଲକ୍ଷ୍ମୀବାଈ ୧୮୫୮ ଏପ୍ରିଲ ୩ ତାରିଖ ପର୍ଯ୍ୟନ୍ତ ଅପ୍ରତିହତ ଭାବରେ ଝାନ୍ସିର ଶାସନ କାର୍ଯ୍ୟ ଚଳାଇଲେ ।

ଇଂରେଜ ପକ୍ଷର ଜଣେ ପ୍ରବୀଣ ସେନାପତି ଥିଲେ । ତାଙ୍କ ନାମ ହ୍ୟୁରୋଜ । ସେ ଧୀର ସ୍ଥିର ଭାବରେ ବୁନ୍ଦେଲଖଣ୍ଡରେ ଯୁଦ୍ଧ ଚଳାଉ-ଥିଲେ ଏବଂ କ୍ରମେ କ୍ରମେ ପୁଣି ବୁନ୍ଦେଲ ଖଣ୍ଡକୁ ଇଂରେଜମାନଙ୍କ ହାତକୁ ନେବାକୁ ସମର୍ଥ ହୋଇଥିଲେ ।

ହ୍ୟୁରୋଜ ବେତବା ନଦୀ କୂଳରେ ତାନ୍ତିଆ ଟୋପିଙ୍କୁ ପରାସ୍ତ କଲେ । ତାନ୍ତିଆ ପଳାୟନ କଲେ । ହ୍ୟୁରୋଜ ୧୮୫୮ ଏପ୍ରିଲ ୩ ତାରିଖରେ ଝାନ୍ସି ଅବରୋଧ କଲେ । ଲକ୍ଷ୍ମୀବାଈ ପୁରୁଷ ବେଶ ଧରି ଭୀଷଣ ଯୁଦ୍ଧ କଲେ । ଇଂରେଜମାନେ ତାଙ୍କର ଯୁଦ୍ଧ ଦେଖି ଛାନିଆ ହୋଇଗଲେ । ଶେଷରେ ରାଣୀ ଆଉ ପାରିଲେ ନାହିଁ । ଇଂରେଜମାନେ ଦୁର୍ଗ ଉପରେ ତୋପ ମାଡ଼ କରି ଦୁର୍ଗ ହାତ କଲେ ଏବଂ ଦୁର୍ଗ ମଧ୍ୟରେ ପଶିଗଲେ । ଲକ୍ଷ୍ମୀବାଈ ଏପ୍ରିଲ ୪ ତାରିଖ ରାତିରେ ଦୁର୍ଗ ଛାଡ଼ି ଦେଲେ, କିନ୍ତୁ ଇଂରେଜମାନଙ୍କଠାରେ ଆତ୍ମସମର୍ପଣ ନ କରି କାଲ୍ପୀକୁ ପ୍ରସ୍ଥାନ କଲେ । ଇଂରେଜମାନେ ତାଙ୍କ ପିଛା ଧରି ମଇ ୨୨ ତାରିଖରେ କାଲ୍ପୀ ମଧ୍ୟ ଅଧିକାର କଲେ ।



ଏତେ ପରାଜୟ ପାଇ ମଧ୍ୟ ଝାନ୍ସି ରାଣୀଙ୍କ ବଳ ସାହସ ବା ତେଜ ଊଣା ହୋଇ ନ ଥିଲା । ସେ ତାନ୍ତିଆଙ୍କ ସାଙ୍ଗରେ ଯାଇ ଗୁଆଲିୟର ଅଧିକାର କଲେ ଏବଂ ସିନ୍ଧିଆଙ୍କୁ ଗୁଆଲିୟରରୁ ତଡ଼ି ଦେଲେ । ସିନ୍ଧିଆ ଆଗ୍ରାକୁ ପଳାୟନ କରି ସେଠାରେ ଇଂରେଜମାନଙ୍କ ଆଶ୍ରୟରେ ରହିଲେ । ଲକ୍ଷ୍ମୀବାଈ ଓ ତାନ୍ତିଆ ଗୁଆଲିୟରରେ ନାନାସାହେବଙ୍କୁ ପେଶବା ବୋଲି ଘୋଷଣା କଲେ ।

ହ୍ୟୁରୋଜଙ୍କୁ ଭାରି ଚିନ୍ତା ପଡ଼ିଲା । ଏଣିକି ମରହଟ୍ଟାମାନେ ଯଦି ଲକ୍ଷ୍ମୀବାଈଙ୍କ ସଙ୍ଗେ ମିଶି ଯାନ୍ତି, ଅବସ୍ଥା ଆହୁରି ଅସମ୍ଭାଳ ହେବ । ସିନ୍ଧିଆ

ତ ଯୁଦ୍ଧରେ ଯୋଗ ଦେଇ ନ ଥିଲେ । ସେ ପଳାଇଯିବା ପରେ ଏବଂ ନାନାସାହେବ ପେଶବା ବୋଲି ଘୋଷିତ ହେବା ପରେ, ସିନ୍ଧିଆଙ୍କ ଲୋକମାନେ ଲକ୍ଷ୍ମୀବାଈ ଓ ତାନ୍ତିଆଙ୍କ ଦଳରେ ଯୋଗ ଦେଲେ ।

ସେ କଥା ନ ହେଉଣୁ ହ୍ୟୁରୋଜ ଗୁଆଲିୟର ଆକ୍ରମଣ କଲେ । ରାଣୀ ଲକ୍ଷ୍ମୀବାଈ ପୁରୁଷ ବେଶରେ ଘୋଡ଼ା ଉପରେ ବସି ପ୍ରାଣପଣେ ଯୁଦ୍ଧ କଲେ । ମୋରାର ଓ କୋଟା ଦୁଇଟା ଜାଗାରେ ଯୁଦ୍ଧ ହେଲା । କିନ୍ତୁ ଭାଗ୍ୟଲକ୍ଷ୍ମୀ ଲକ୍ଷ୍ମୀବାଈଙ୍କୁ ଈର୍ଷା କରୁଥିଲେ । ଉଭୟ ଯୁଦ୍ଧରେ ଲକ୍ଷ୍ମୀବାଈ ପରାସ୍ତ ହେଲେ । ୧୮୫୮ ଜୁନ ୧୭ ତାରିଖରେ ଜଣେ ଇଂରେଜ ସୈନିକ ତାଙ୍କୁ ଖଣ୍ଡା ଚୋଟରେ ଆଘାତ କରି ଘୋଡ଼ା ଉପରୁ ଖସାଇ ଦେଲେ । ସାଂଘାତିକ ଆଘାତ ପାଇ ଲକ୍ଷ୍ମୀବାଈ ବୁଝିଲେ ପାରିଲେ, ଅଳ୍ପ ସମୟ ମଧ୍ୟରେ ତାଙ୍କର ପ୍ରାଣ ଯିବ ।

ଏହି ସମୟରେ ପାଖର ଜଣେ ପଣ୍ଡା ଋଷିଖଣ୍ଡିଆ ଲକ୍ଷ୍ମୀବାଈଙ୍କ ଘୋଷ ଗୁରୁ ରୂପେ ବରାବର ତାଙ୍କ ସଙ୍ଗେ ରହି ତାଙ୍କୁ ସବୁ ବିଷୟରେ ପରାମର୍ଶ ଦେଉଥିଲେ । ଲକ୍ଷ୍ମୀବାଈ ନିଜ ଶେଷ ସମୟ ଉପସ୍ଥିତ ହୋଇଥିବା ଜାଣି ଋଷିଙ୍କୁ କହିଲେ, "ମୋତେ ଗଙ୍ଗାଜଳରେ ସ୍ନାନ କରାଇ ଦିଅନ୍ତୁ ।"

ଋଷି ଗଙ୍ଗାଜଳରେ ଲକ୍ଷ୍ମୀବାଈଙ୍କୁ ସ୍ନାନ କରାଇ ଦେଲେ । ଅଳ୍ପ ସମୟ ପରେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ଋଷି ଛପି ଛପି ନେପାଳକୁ ପଳାୟନ କଲେ । ସେଠାରେ ଧରା ହୋଇ ଫାଶୀଦଣ୍ଡ ପାଇଲେ ।

ତାନ୍ତିଆ ଟୋପି ଏଣା ପୂର୍ବରୁ ଲକ୍ଷ୍ମୀବାଈଙ୍କୁ ଛାଡ଼ିବାକୁ ବାଧ୍ୟ ହୋଇଥିଲେ । ଗୋରା ସୈନିକମାନେ ତାଙ୍କ ପଛରେ ଗୋଡ଼ାଇବାରୁ ସେ ବିଭିନ୍ନ ସ୍ଥାନକୁ ଯାଇ ଆଶ୍ରୟ ନେଉଥିଲେ । ଶେଷରେ ସିନ୍ଧିଆର ଜଣେ ସାମନ୍ତ ମାନସିଂହ ତାଙ୍କୁ ଧରାଇ ଦେଇଥିଲେ । ତାନ୍ତିଆ ଫାଶୀକାଠରେ ପ୍ରାଣ ହରାଇଲେ ।

ପେଶୱା ନାନାସାହେବ ନେପାଳକୁ ପଳାୟନ କରିଥିଲେ । ସେଠାରେ ତାଙ୍କର କ'ଣ ପରିଣାମ ହୋଇଥିଲା, କାହାରିକୁ ଜଣା ନାହିଁ ।

୧୮୫୭ର ସ୍ୱାଧୀନତା ଯୁଦ୍ଧରେ ଭାରତର ଅନେକ ନେତା ଯୋଗ ଦେଇଥିଲେ । ଝାନ୍ସୀ ରାଣୀ ଲକ୍ଷ୍ମୀବାଈ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ । ଅତୁଳ ଧୈର୍ଯ୍ୟ, ସାହସ, ସହିଷ୍ଣୁତା, ରଣକୌଶଳ ଓ ବୁଦ୍ଧି ବଳରେ ସେ ଦୀର୍ଘକାଳ ପର୍ଯ୍ୟନ୍ତ ପରାକ୍ରାନ୍ତ ଇଂରେଜ ସରକାରଙ୍କୁ ଅସ୍ଥିର କରି ଦେଇଥିଲେ । ଏ ବିଷୟରେ ପୁରୁଷମାନେ ସୁଦ୍ଧା ତାଙ୍କ ସମକକ୍ଷ ନ ଥିଲେ । ଲକ୍ଷ୍ମୀବାଈଙ୍କ ସାମର୍ଥ୍ୟ ଦେଖି ଇଂରେଜମାନେ ପ୍ରମାଦ ଗଣିଥିଲେ ଏବଂ ଇଂରେଜ ସେନାପତି ତାଙ୍କ ବୀରତ୍ୱର ଭୂୟସୀ ପ୍ରଶଂସା କରିଛନ୍ତି । ଭାରତର ସ୍ୱାଧୀନତା ଯୁଦ୍ଧର ଇତିହାସରେ ଲକ୍ଷ୍ମୀବାଈଙ୍କ ନାମ ଚିରକାଳ ଅମର ଅକ୍ଷରରେ ଲିପିବଦ୍ଧ ରହିବ ।

———

( ୧୦ )

## ସରୋଜିନୀ ନାଇଡୁ

ସରୋଜିନୀଙ୍କ ପିତାଙ୍କ ନାମ ଅଘୋର ନାଥ ଚଟ୍ଟୋପାଧ୍ୟାୟ । ସେ ବଙ୍ଗାଳୀ, କିନ୍ତୁ ତାଙ୍କ ପୂର୍ବପୁରୁଷମାନେ ବଙ୍ଗ ଦେଶ ଛାଡ଼ି ଦାକ୍ଷିଣାତ୍ୟର ହାଇଦ୍ରାବାଦ ସହରରେ ବାସ କରୁଥିଲେ । ଅଘୋର ନାଥ ସ୍କଟଲଣ୍ଡ ଯାଇ ଏଡ଼ିନବର୍ଗ ବିଶ୍ୱବିଦ୍ୟାଳୟରୁ ବିଜ୍ଞାନରେ ଉତ୍କୃଷ୍ଟ ଉପାଧି ପାଇଥିଲେ ।

ଅଘୋରନାଥ ବଙ୍ଗାଳୀ ଲୋକ । ତାଙ୍କ ଘରକୁ ଯେଉଁମାନେ ଆସୁଥିଲେ, ସମସ୍ତେ ବାଧ୍ୟ ହୋଇ ତାଙ୍କ ସଙ୍ଗେ ଇଂରାଜୀରେ କଥାବାର୍ତ୍ତା କରୁଥିଲେ । କାରଣ, ସେମାନଙ୍କୁ ବଙ୍ଗଳା ଭାଷା ଜଣା ନ ଥିଲା । ଆଉ ଅଘୋରନାଥଙ୍କୁ ସେମାନଙ୍କ ଭାଷା ଜଣା ନ ଥିଲା । ସରୋଜିନୀ ପିଲାଦିନୁ ଇଂରାଜୀ ଭାଷା ସହଜରେ ଶିଖି ପାରିଥିଲେ ।

ସରୋଜିନୀ ଇଂରାଜୀ ଭାଷା ପଢ଼ିବା ପାଇଁ ଇଂରାଜୀ ସ୍କୁଲରେ ନାମ ଲେଖାଇଥିଲେ । ସେ ବାରବର୍ଷ ବୟସରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ପାସ୍ କରିଥିଲେ ।

ସରୋଜିନୀ ଇଂରାଜୀ ଭାଷା ଏପରି ଭଲଭାବେ ଆୟତ୍ତ କରି ପାରିଥିଲେ ଯେ, ତେର ବର୍ଷ ବୟସ ହେଲେ ଇଂରାଜୀରେ କବିତା ଲେଖୁଥିଲେ ଏବଂ ତେର ଶହ ପଦ ଥାଇ ଏକ ଇଂରାଜୀ କାବ୍ୟ ଲେଖିଥିଲେ ।

ସରୋଜିନୀ ଲଣ୍ଡନର କିଙ୍ଗସ୍ କଲେଜକୁ ଯାଇ ସେଠାରେ ୩ ବର୍ଷ ପାଠ ପଢ଼ିଥିଲେ । ସେଠାରୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଲେ ଏବଂ ୨୨ ବର୍ଷ ବୟସରେ ଭାରତକୁ ଫେରିଲେ । ଲଣ୍ଡନରୁ ସେ ୟୁରୋପ ମହାଦେଶର ଇଟାଲି ରାଜ୍ୟକୁ ଯାଇ ସେଠାରେ କିଛିଦିନ ରହିଥିଲେ । ଲଣ୍ଡନରେ ଥିବାବେଳେ ସଭାସମିତିମାନଙ୍କରେ ଏପରି ସୁନ୍ଦର ସୁନ୍ଦର ବକ୍ତୃତା ଦେଇ ପାରୁଥିଲେ ଯେ, ଇଂରେଜମାନେ ତାହା ଶୁଣି ଭାରି ପ୍ରଶଂସା କରୁଥିଲେ ।



ବିଲାତରୁ ଫେରି ସେ ମାନ୍ଦ୍ରାଜର ଡାକ୍ତର ମେଜର ନାଇଡୁଙ୍କୁ ବିବାହ କରିଥିଲେ । ଏହି ଡାକ୍ତରଙ୍କୁ ବିଭା ହେବା ପରେ ତାଙ୍କ ନାଁ ସରୋଜିନୀ ନାଇଡୁ ହେଲା । ତାଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ ଜନ୍ମ ହୋଇଥିଲେ ।

ସରୋଜିନୀ ୧୮୭୮ ଫେବୃୟାରି ୧୩ ତାରିଖ ଦିନ ଜନ୍ମ ହୋଇଥିଲେ । ୧୯୧୬ରେ ଲକ୍ଷ୍ନୌ ସହରରେ ଭାରତର ଜାତୀୟ କଂଗ୍ରେସର

ଅଧିବେଶନ ହେଲା । କଂଗ୍ରେସ ସେତେବେଳେ ଭାରତକୁ ଇଂରେଜମାନଙ୍କ ଅଧିକାରରୁ ସ୍ୱାଧୀନ କରିବା ନିମନ୍ତେ ଆନ୍ଦୋଳନ କରୁଥିଲା । ସରୋଜିନୀ ସେହି କଂଗ୍ରେସ ଅଧିବେଶନରେ ଯୋଗ ଦେଲେ । ସେତେବେଳକୁ ତାଙ୍କ ବୟସ ୩୮ ବର୍ଷ । କଂଗ୍ରେସରେ ସେ ଗୋଟିଏ ଭଲ ବକ୍ତୃତା ଦେଲେ । ଭାରତର ନେତାମାନେ ତାଙ୍କ ବକ୍ତୃତା ଶୁଣି ମୁଗ୍ଧ ହୋଇଗଲେ ଏବଂ ସେହି ଦିନଠାରୁ ସରୋଜିନୀଙ୍କୁ ସେମାନଙ୍କ କଂଗ୍ରେସର ଜଣେ ପ୍ରଧାନ ନେତ୍ରୀ ବୋଲି ବିଚାର କଲେ ।

ସରୋଜିନୀ କଂଗ୍ରେସର ଜଣେ ସଭ୍ୟା ହେଲେ । ୧୯୧୪ରୁ ୧୯୧୮ ପର୍ଯ୍ୟନ୍ତ ୟୁରୋପ ମହାସମର ହୋଇଥିଲା । ଇଂରେଜମାନେ ଜର୍ମାନ ବିରୋଧରେ ଯୁଦ୍ଧ କରିଥିଲେ । ଯୁଦ୍ଧ ପରେ ଇଂରେଜମାନେ ଭାରତକୁ ସ୍ୱାୟତ୍ତ-ଶାସନ ଦେବେ ବୋଲି ପ୍ରତିଜ୍ଞା କରିଥିଲେ ।

ଭାରତର ନେତାମାନେ ଇଂରେଜ ସରକାରଙ୍କୁ ସ୍ୱାୟତ୍ତ-ଶାସନ ଦେବା କଥା ବୁଝାଇବା ପାଇଁ କେତେକ ପ୍ରତିନିଧି ବାଛିଲେ । ଏହି ପ୍ରତିନିଧି ଦଳ ମଧ୍ୟରେ ସରୋଜିନୀ ନାଇଡୁ ମଧ୍ୟ ପ୍ରତିନିଧି ରୂପେ ବିଲାତକୁ ଗଲେ ।

ସରୋଜିନୀ ବିଲାତକୁ ଯାଇ ସେଠା ପୁରୁଷ ଓ ସ୍ତ୍ରୀ ସମସ୍ତଙ୍କୁ ଭାରତରେ ଇଂରେଜ ସରକାରଙ୍କ ଅତ୍ୟାଚାର କଥା ବୁଝାଇଲେ । ତାଙ୍କ ବକ୍ତୃତାରେ ବିଲାତର ଲୋକେ ଭାରତର ଦୁର୍ଦ୍ଦଶା ସମ୍ବନ୍ଧରେ ଅନେକ କଥା ଜାଣିଥିଲେ ।

୧୯୨୧ରେ ଥରେ ବୋମ୍ବେଇ ସହରରେ ହିନ୍ଦୁ ମୁସଲମାନ ଭିତରେ କଳି ଉପୁଜି ହାଣକାଟ ଚାଲିଲା । ମହାତ୍ମା ଗାନ୍ଧି ଯାଇ ଜେଲଦଣ୍ଡ ଭୋଗୁଥାନ୍ତି । ସେ ସରୋଜିନୀ ନାଇଡୁଙ୍କୁ ସେହି ଗଣ୍ଡଗୋଳ ତୁଟାଇଦେବା ପାଇଁ ପଠାଇଲେ ।

ସରୋଜିନୀ ବୋମ୍ବେଇ ସହରକୁ ନିର୍ଭୟରେ ଗଲେ । ଆହତ ଲୋକମାନଙ୍କୁ ଶୁଶ୍ରୂଷା କଲେ । ବାଡ଼ିଅପିଟା ହେଉଥିବା ଲୋକମାନଙ୍କୁ

ବୁଝାଇଲେ । ଲୋକେ ତାଙ୍କ କଥା ମାନିଲେ । ଅଳ୍ପ ଦିନ ଭିତରେ ଗଣ୍ଡଗୋଳ ବନ୍ଦ ହୋଇଗଲା ।

ଭାରତରେ ସରୋଜିନୀଙ୍କ ଏପରି ନାମ ହେଉଥିବା ଦେଖି ଇଂରେଜ ସରକାର ମନେକଲେ, ତାଙ୍କୁ ହାତ କଲେ ସରକାରଙ୍କ ସୁବିଧା ହେବ । ତେଣୁ ସରକାର ତାଙ୍କୁ "କାଇଜର ହିନ୍ଦ୍" ଉପାଧି ଦେଲେ ।

ଅଳ୍ପ ଦିନ ପରେ ପଞ୍ଜାବର ଅମୃତସରଠାରେ ଅସଂଖ୍ୟ ଭାରତୀୟ ଜମା ହୋଇ 'ଜାଲିଆନାବାଲାବାଗ' ବୋଲି ଏକ ବଗିଚାରେ ଗୋଟିଏ ବଡ଼ ସଭା କଲେ । ଭାରତକୁ ସ୍ୱାଧୀନତା ଦେଇ ଦେବା ନିମନ୍ତେ ସେହି ସଭାରେ ଭାରତୀୟମାନେ ଇଂରେଜ ସରକାରଙ୍କ ବିରୋଧରେ ବହୁତ ଆଲୋଚନା କଲେ ।

ଇଂରେଜ ସେନାପତି ଓଡାୟାର ଗୁଳି ଚଳାଇ ସଭାର ଅନେକ ଲୋକଙ୍କୁ ମାରି ପକାଇଲେ ଏବଂ ଅନେକଙ୍କୁ ଘାଇଲା କଲେ । ଏହି ହତ୍ୟା କାଣ୍ଡରେ ସରୋଜିନୀ ବଡ଼ ବିବ୍ରତ ହୋଇ ପଡ଼ିଲେ ଏବଂ ସରକାରଙ୍କୁ ନିନ୍ଦା କରି 'କାଇଜର ହିନ୍ଦ୍' ଉପାଧି ଫେରାଇ ଦେଲେ ।

୧୯୨୦ରେ ସମ୍ରାଟ୍ ପଞ୍ଚମ ଜର୍ଜଙ୍କ ପୁଅ ଅଷ୍ଟମ ଏଡ଼ୱାର୍ଡ ଭାରତକୁ ବୁଲିବା ନିମନ୍ତେ ଆସିଥିଲେ । ସେତେବେଳେ ମହାତ୍ମା ଗାନ୍ଧି ଓ କଂଗ୍ରେସ ତାଙ୍କ ସଙ୍ଗେ ଅସହଯୋଗ କରିବାରୁ ବୋମ୍ବେଇରେ ପୁଣି ହାଣକାଟ ଲାଗିଲା । ସରୋଜିନୀଙ୍କ ଚେଷ୍ଟାରେ ହାଣକାଟ ପୁଣି ବନ୍ଦ ହେଲା ।

ଏହା ପରେ ସରୋଜିନୀ ଥରେ ସିଂହଳକୁ ଏବଂ ଆଉ ଥରେ ଆଫ୍ରିକାକୁ ଯାଇଥିଲେ । ସିଂହଳରେ ସେ ଭାରତ କଥା ପ୍ରଚାର କରିଥିଲେ । ଆଫ୍ରିକା ସରକାର ସେଠା କଳା ଲୋକଙ୍କ ଉପରେ ଅତ୍ୟାଚାର କରୁଥିଲେ । ସରୋଜିନୀ ସେହି ସବୁ ଅତ୍ୟାଚାର ନିଜ ଆଖିରେ ଦେଖି ପତ୍ର ପତ୍ରିକାରେ ଛାପିବାରୁ ଆଫ୍ରିକା ସରକାର ଅତ୍ୟାଚାର ବନ୍ଦ କରିଥିଲେ ।

୧୯୨୫ରେ କାନପୁରରେ ଭାରତର ଜାତୀୟ କଂଗ୍ରେସ ବସିଲା । ନେତାମାନେ ଏହି କଂଗ୍ରେସରେ ସରୋଜିନୀଙ୍କୁ ସଭାପତି ହେବାପାଇଁ ବାଛିଲେ । ସରୋଜିନୀ ସଭାପତି ହୋଇ ବିଦେଶରେ ଥିବା ଭାରତୀୟମାନଙ୍କୁ ଅତ୍ୟାଚାରରୁ ରକ୍ଷା କରିବା ନିମନ୍ତେ କଂଗ୍ରେସର କାଗଜପତ୍ର ହିନ୍ଦୀ ଭାଷାରେ ଲେଖାଲେଖି ହେବ ବୋଲି ସ୍ଥିର କଲେ ।

ଭାରତରେ ଏହା ପରେ ଆଇନ ଅମାନ୍ୟ ଆନ୍ଦୋଳନ ହେଲା । ସରକାର କାହାରିକୁ ଲୁଣ ମାରିବା ଅଧିକାର ଦେଇ ନ ଥିଲେ । ମହାତ୍ମା ଗାନ୍ଧି ଆଇନ ଅମାନ୍ୟ କରି ପ୍ରଥମେ ଲୁଣ ମାରିଲେ । ସରକାର ତାଙ୍କୁ ଜେଲଦଣ୍ଡ ଦେଲେ ।

ଗାନ୍ଧି ଜେଲ୍ ଯିବା ପରେ ଲୁଣମାରିବା ଲୋକଙ୍କର ଜଣେ ନେତା ଦରକାର ହେଲା । ସରୋଜିନୀ ନେତ୍ରୀ ହୋଇ ବାହାରିପଡ଼ିଲେ । ପୋଲିସ ସରୋଜିନୀଙ୍କ ସହିତ ସବୁ ଲୋକଙ୍କୁ ନେଇ ଜେଲଖାନା ଭିତରେ ବନ୍ଦ କଲେ ।

ଭାରତର ଭାଇସରାୟ ଇରୁଇନ ସାହେବ ବୁଝିଲେ, ଗୋଟିଏ ମିଳାମିଶା କରି ଆଇନ-ଅମାନ୍ୟ ଆନ୍ଦୋଳନ ବନ୍ଦ ନ କଲେ ଚଳିବ ନାହିଁ । ସେ ଗାନ୍ଧି ଓ ସରୋଜିନୀଙ୍କୁ ଜେଲଖାନାରୁ ମୁକ୍ତି ଦେଲେ ଏବଂ ଗାନ୍ଧିଙ୍କ ସଙ୍ଗେ "ଗାନ୍ଧି ଇରୁଇନ ସନ୍ଧି" କଲେ ।

ସନ୍ଧି ଅନୁସାରେ ଆଇନ ଅମାନ୍ୟ ବନ୍ଦ ହେଲା । ଭାରତକୁ ସ୍ୱାଧୀନତା ଦେବା କଥା ବିଚାର କରିବା ନିମନ୍ତେ ବିଲାତର ବଡ଼ ବଡ଼ ଲୋକଙ୍କୁ ଏବଂ ଭାରତର ବଡ଼ ବଡ଼ ଲୋକଙ୍କୁ ନେଇ ଏକ "ଗୋଲ୍ ଟେବୁଲ୍ ବୈଠକ" ହେଲା । କଂଗ୍ରେସ ପକ୍ଷରୁ ମହାତ୍ମା ଗାନ୍ଧି, ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ଓ ସରୋଜିନୀ ନାଇଡୁ ସେହି ସଭାକୁ ଗଲେ କିନ୍ତୁ ସଭାରେ ସ୍ୱାଧୀନତା କଥାର ମୀମାଂସା ହୋଇ ପାରିଲା ନାହିଁ । ଫଳରେ ଭାରତର ସ୍ୱାଧୀନତା ଆନ୍ଦୋଳନ ବନ୍ଦ ହେଲା ନାହିଁ ।

ସରକାର ଜବରଦସ୍ତି ୧୯୩୫ ଭାରତ ଶାସନ ସଂସ୍କାର ଭାରତ ଉପରେ ଲଦି ଦେଲେ ।

୧୯୩୯ରେ ପୃଥିବୀ ମହାସମର ଆରମ୍ଭ ହୋଇଗଲା । ମହାତ୍ମାଗାନ୍ଧି ଏତେବେଳେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଉଥାଆନ୍ତି । ସରୋଜିନୀ ସତ୍ୟାଗ୍ରହ କରି ପୁଣି ଜେଲଖାନା ଗଲେ । କିନ୍ତୁ ତାଙ୍କ ଦେହ ବେମାର ହେବାରୁ ସରକାର ତାଙ୍କୁ ଦୁଇବର୍ଷ ଜେଲରେ ରଖି ପଛକୁ ଛାଡ଼ିଦେଲେ ।

ପୃଥିବୀ ମହାସମର ସରିଗଲା । ଇଂରେଜ ସରକାର ବୁଝି ପାରିଲେ, ଭାରତକୁ ସ୍ୱାଧୀନତା ନ ଦେଲେ ଆଉ ଚଳିବ ନାହିଁ । ୧୯୪୭ ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନ ହେଲା ।

ଭାରତ ସ୍ୱାଧୀନ ହେବା ପରେ ସରୋଜିନୀ ନାଇଡୁ ଯୁକ୍ତପ୍ରଦେଶର ପ୍ରଥମ ଲାଟ ନିଯୁକ୍ତ ହୋଇଥିଲେ । ସେ ଏହି କାର୍ଯ୍ୟ ଏପରି ସୁନ୍ଦର ରୂପେ ନିର୍ବାହ କରିଥିଲେ ଯେ, ସମସ୍ତେ ବିସ୍ମିତ ହୋଇ ଥିଲେ ।

ଦିଲ୍ଲୀରେ ଏସିଆର ସବୁ ରାଜ୍ୟର ଗୋଟିଏ ସଭା ବସିଥିଲା । ସେଥିରେ ମଧ୍ୟ ସରୋଜିନୀ ସଭାପତି କାମ ସୁନ୍ଦର ରୂପେ ନିର୍ବାହ କରିଥିଲେ । ତାଙ୍କ ପଟୁତା ଦେଖି ସବୁ ରାଜ୍ୟର ପ୍ରତିନିଧିମାନେ ତାଙ୍କୁ ପ୍ରଶଂସା କରିଥିଲେ ।

ସରୋଜିନୀ ଏହିପରି ଦେଶର ଅନେକ ମଙ୍ଗଳ ସାଧନ କରି ୧୯୪୯ ମାର୍ଚ୍ଚ ୨ ତାରିଖରେ ଏଲାହାବାଦ ସହରରେ ସତୁରି ବର୍ଷ ବୟସରେ ଇହଧାମରୁ ବିଦାୟ ନେଇଥିଲେ । ସେତେବେଳେ ମଧ୍ୟ ସେ ଯୁକ୍ତପ୍ରଦେଶର ଲାଟ ଥିଲେ ।

ସରୋଜିନୀ ଜଣେ ଆଦର୍ଶ ଦେଶ ସେବିକା ଥିଲେ । ତାଙ୍କର ବକ୍ତୃତା ଶୁଣି ଲୋକେ ଚିତ୍ରପୁତ୍ତଳିକା ପରି ରହୁଥିଲେ । ସବୁ ଶ୍ରେଣୀର ଲୋକେ ତାଙ୍କୁ ଆଦର କରୁଥିଲେ ଏବଂ ତାଙ୍କ ପରାମର୍ଶ ନେଉଥିଲେ । ତାଙ୍କ ବ୍ୟବହାର ଅତି ମଧୁର ଥିଲା । ବିଶେଷତଃ, ଗୋଟିଏ ପ୍ରଦେଶର ଶାସନକର୍ତ୍ତ୍ରୀ ରୂପେ ସେ ନିଜ ଶକ୍ତିର ଯଥେଷ୍ଟ ପ୍ରମାଣ ଦେଖାଇଥିଲେ ।

ସରୋଜିନୀଙ୍କ ସବୁଠାରୁ ବଡ଼ ଗୁଣ ହେଉଛି ଯେ, ସେ ଜଣେ ବିଖ୍ୟାତ କବି ଓ ଲେଖିକା ଥିଲେ ! ସେ ପୃଥିବୀର ବଡ଼ ବଡ଼ ପତ୍ରିକାରେ ଲେଖାମାନ ପ୍ରକାଶ କରୁଥିଲେ । ଇଂରାଜୀ ଓ ବଙ୍ଗଳା ଭାଷାରେ ତାହାଙ୍କର ଅନେକ କବିତା ଅଛି । ସେଗୁଡ଼ିକ ପଢ଼ି ଲୋକେ ବିଶେଷ ଆଦର କରୁଛନ୍ତି । ଯୁରୋପର ଲୋକେ ତାଙ୍କୁ "ଭାରତ କୋକିଳ" ଆଖ୍ୟା ଦେଇଛନ୍ତି । ଇଂଲଣ୍ଡ ଓ ଆମେରିକାରେ ତାଙ୍କ ଲେଖାମାନ ପାଠ୍ୟପୁସ୍ତକରେ ରହିଛି ।

ସରୋଜିନୀଙ୍କ ପରି କୃତୀ ମହିଳା ଏ ପର୍ଯ୍ୟନ୍ତ ପୃଥିବୀରେ ଅତ୍ୟଳ୍ପ ଦେଖା ଯାଇଛନ୍ତି । ତାଙ୍କ ପାଇଁ ଭାରତ ଦେଶ ବିଦେଶରେ ନାମ କରି ଧନ୍ୟ ହୋଇଛି ।



ସ ମା ପ୍ତ

ମୁଦ୍ରାକର—ଶ୍ରୀ ଅମ୍ଳାନବଦନ ପଟ୍ଟନାୟକ, ନବଜୀବନ ପ୍ରିଣ୍ଟର୍ସ, କଟକ-୯